# ଭାଷାତତ୍ତ୍ୱ ସମୀକ୍ଷା

ଲେଖକ—
ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ଏମ୍. ଏ.
ବଣ୍ଠପଲ୍ଲୀ

ମୂଲ୍ୟ—ଦୁଇଟଙ୍କା ମାତ୍ର

କଟକ, ଭୁବନେଶ୍ୱର ଓ ସମ୍ବଲପୁର ବହି ଦୋକାନଗୁଡ଼ିକରେ
ଅନୁସନ୍ଧାନ କରନ୍ତୁ ।

ପ୍ରଥମ ମୁଦ୍ରଣ

୧୯୭୦, ଅପ୍ରେଲ

ଲୋନା,
ଝଣ୍ଡାମାରୀଚୌକ,
କଟକ-୨
} ମୁଦ୍ରିତ

# ପୂର୍ବାଭାଷ

ଓଡ଼ିଆରେ ଭାଷାତତ୍ତ୍ୱ ସମ୍ବନ୍ଧୀୟ ଆଲୋଚନା ପୁସ୍ତକ ଖୁବ୍ କମ୍ । ସ୍ନାତକୋତ୍ତର ଓଡ଼ିଆ ବିଭାଗର ଛାତ୍ରଛାତ୍ରୀମାନେ ଏହି ଅଭାବ ପୂରଣ ନିମିତ୍ତ ଇଂରାଜୀ, ହିନ୍ଦୀ କିମ୍ବା ବଙ୍ଗଳା ପୁସ୍ତକ ଉପରେ ସାଧାରଣତଃ ନିର୍ଭର କରିଥାନ୍ତି । ଫଳତଃ, ଭାଷାତତ୍ତ୍ୱ ଆଲୋଚନାରେ ଧ୍ୱନି ପରିବର୍ତ୍ତନ, ଅର୍ଥ ବିକୃତି ଓ ସାଦୃଶ୍ୟକଥନାଦିର ରୂପଗତ-ବୈଚିତ୍ର୍ୟ ନିର୍ଣ୍ଣୟ ଓ ବ୍ୟାଖ୍ୟାନଜନିତ ଦୃଷ୍ଟାନ୍ତ ଅବତାରଣାବେଳେ ସେମାନେ ହିନ୍ଦୀ କିମ୍ବା ବଙ୍ଗଳା ଶବ୍ଦଦ୍ୱାରା ପ୍ରଭାବିତ ହୋଇଥାନ୍ତି । ଏହାଦ୍ୱାରା ମାତୃଭାଷା ଓ ସାହିତ୍ୟର ଅବମାନନା ହେବା ସ୍ୱାଭାବିକ୍ । ଓଡ଼ିଆ ଗବେଷକ ଓ ଭାଷାବିତ୍‌ମାନେ ଏଥିପ୍ରତି ସଚେତନ ହେବା ଏକାନ୍ତ ପ୍ରୟୋଜନ ।

ଓଡ଼ିଆ ଭାଷାର ପ୍ରାଚୀନତା, ଶବ୍ଦପ୍ରାଚୁର୍ଯ୍ୟ, ଉଚ୍ଚାରଣଜନିତ ବୈଶିଷ୍ଟ୍ୟ, ବ୍ୟାକରଣ ସିଦ୍ଧ ଶବ୍ଦପ୍ରୟୋଗ ଓ ଅନ୍ୟାନ୍ୟ ଭାଷା-ଭାଷୀଙ୍କଠାରୁ ଏହାର ବଚନ, ଲିଙ୍ଗ ଏବଂ କ୍ରିୟାବିଧିର ସ୍ୱାତନ୍ତ୍ର୍ୟ ହେତୁ ଭାରତୀୟ ଆର୍ଯ୍ୟଭାଷାମାନଙ୍କ ମଧ୍ୟରେ ଓଡ଼ିଆଭାଷା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ତେଣୁ, ଆମର ଭାଷା ଭାରତର ଅନ୍ୟ କୌଣସି ଅଞ୍ଚଳ ତୁଳନାରେ ନ୍ୟୂନ ନୁହେଁ; ବରଂ ଅନେକ କ୍ଷେତ୍ରରେ ଉନ୍ନତତର । ଗ୍ରିୟରସନଙ୍କ ମତରେ—"Oriya is an elder stage of grammatical development than even classical Sanskrit and among Indo-Arian languages can only be compared with the ancient Sanskrit, spoken in vedic times.

ଭାଷାତତ୍ତ୍ୱର ଆଲୋଚନା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର କେତୋଟି ପ୍ରଧାନ ଆଭିମୁଖ୍ୟ ଏହି ପୁସ୍ତକରେ ଦର୍ଶାଯାଇଅଛି ।

ଭାଷା ଓ ସାହିତ୍ୟ ଏକାର୍ଥବୋଧକ ନ ହେଲେହେଁ ଦୁଇଟିର ସଂପର୍କ ଅବଚ୍ଛେଦ୍ୟ । ଗୋଟିଏ ସାହିତ୍ୟକୁ ସମୃଦ୍ଧ କରିବାକୁ ହେଲେ ସେହି ଅଞ୍ଚଳର ଭାଷାର ବ୍ୟାପକ ଆଲୋଚନା, ଗଭୀର ଅଧ୍ୟୟନ ଓ ବୈଶିଷ୍ଟ୍ୟ ନିରୂପଣ ନିତାନ୍ତ ଆବଶ୍ୟକ । ଏହି ଦୃଷ୍ଟିକୋଣରୁ 'ଭାଷାତତ୍ତ୍ୱ ସମୀକ୍ଷା' ପୁସ୍ତକଟି କେତେଦୂର ସାର୍ଥକ ହୋଇପାରିଛି, ତାହା ସୁଧୀ-ପାଠକବୃନ୍ଦ ବିଚାର କରିବେ ।

'ଭାଷାତତ୍ତ୍ୱ ସମୀକ୍ଷା' ପୁସ୍ତକ ପ୍ରକାଶ ନିମିତ୍ତ ମୋର ପିତା ଶ୍ରୀଯୁକ୍ତ ନାରାୟଣ ମିଶ୍ରଙ୍କ ଅକୁଣ୍ଠ ସାହାଯ୍ୟ, ଅଦମ୍ୟପ୍ରେରଣା ଓ ଉତ୍ସାହ ସର୍ବପ୍ରଥମେ ସ୍ମରଣୀୟ । ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀଯୁକ୍ତ କୁଞ୍ଜବିହାରୀ ଦାଶ, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଶ୍ରୀଯୁକ୍ତ ଖଗେଶ୍ୱର ମହାପାତ୍ର ଓ ଅନ୍ନପୂର୍ଣ୍ଣା 'ଖ'ଦଳର ପରିଚାଳନାମୁଖ୍ୟ ଶ୍ରୀଯୁକ୍ତ ମାଧବାନନ୍ଦ କର ପ୍ରମୁଖ ମୋତେ ଏହି ପୁସ୍ତକ ପ୍ରଣୟନ ଦିଗରେ ଉତ୍ସାହ ଦେଇ ଚିରଋଣୀ କରିଛନ୍ତି ।

'ଭାଷାତତ୍ତ୍ୱ ସମୀକ୍ଷା' ପୁସ୍ତକରେ ଅନେକସ୍ଥ ମୁଦ୍ରଣଜନିତ ତ୍ରୁଟିରହିଯାଇଛି । ଶୁଦ୍ଧିପତ୍ରରେ ଏହି ପ୍ରମାଦ କେତେମାନ ସୁଧାରିବା-ନିମିତ୍ତ ମୁଁ ଚେଷ୍ଟାକରିଛି । ଏହି ପୁସ୍ତକର କେତେକ ସ୍ଥଳରେ ବ୍ୟାକରଣ ଦୋଷ ରହିଯାଇ ଥାଇପାରେ । ସୁଧୀ ପାଠକବୃନ୍ଦ ପୁସ୍ତକଟିର ତ୍ରୁଟି-ବିଚ୍ୟୁତି ସମ୍ବନ୍ଧରେ ଜଣାଇଲେ ମୁଁ ପରବର୍ତ୍ତୀ ସଂସ୍କରଣରେ ତାହା ସୁଧାରିବା ନିମିତ୍ତ ଯଥାସମ୍ଭବ ଚେଷ୍ଟାକରିବି । ସହୃଦୟ ପାଠକମାନେ ତ୍ରୁଟି-ମାର୍ଜନା କରିବେ ।

ନବବର୍ଷ
କଟକ, ୧୩ । ୪ । ୭୦

। ଇତି ।
ବିନୀତ ଲେଖକ

# ସୂଚୀ

# ଭାଷା

ଭାଷାର ମାଧ୍ୟମରେ ପ୍ରାଣୀମାନେ ଆପଣାର ମନୋଭାବ ସ୍ୱଜାତୀୟମାନଙ୍କ ନିକଟରେ ବ୍ୟକ୍ତ କରିବାକୁ ସକ୍ଷମ ହୋଇଥାନ୍ତି । ବିଭିନ୍ନ ପ୍ରାଣୀଙ୍କର ସ୍ୱରଯନ୍ତ୍ରର ଗଠନ ପ୍ରଣାଳୀରେ ସ୍ୱାତନ୍ତ୍ର୍ୟ ହେତୁ ସେମାନଙ୍କର ଭାଷା ପ୍ରୟୋଗର ମାଧ୍ୟମ ମଧ୍ୟ ପୃଥକ । ପଶୁ, ପକ୍ଷୀ, କୀଟ, ପତଙ୍ଗ ଏପରିକି ବୃକ୍ଷ-ଲତାଦିର ଯେ ଭାଷା-ପ୍ରକାଶର ସାମର୍ଥ୍ୟ ରହିଛି, ତାହା ଆଧୁନିକ ବୈଜ୍ଞାନିକମାନେ ସ୍ୱୀକାର କରନ୍ତି । ମାନବର ଭାଷା ସମ୍ପର୍କରେ ଗବେଷକମାନେ ଯେତେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ଅନ୍ୟାନ୍ୟ ପ୍ରାଣୀମାନଙ୍କ ଭାଷା ସମ୍ପର୍କରେ ସେପରି ହୋଇନାହିଁ । ପ୍ରାଣୀଜଗତରେ ମାନବର ଶ୍ରେଷ୍ଠତା ସ୍ୱୀକାର କରାଯାଏ । କାରଣ, ବିଭିନ୍ନ ଚିନ୍ତା, କଳ୍ପନା, ସଂକଳ୍ପ ପ୍ରଭୃତି କ୍ରିୟା ପ୍ରକ୍ରିୟାଗୁଡ଼ିକୁ ନେଇ ତା'ର ମନ କାର୍ଯ୍ୟ କରେ । ଏହି କ୍ରିୟା-ପ୍ରକ୍ରିୟାଗୁଡ଼ିକର ବହିଃପ୍ରକାଶ ନିମିତ୍ତ ସେ ନାନା ଉପାୟ ସ୍ଥିର କରେ । ଯେଉଁସବୁ ଉପାୟଗୁଡ଼ିକ ଦ୍ୱାରା ମଣିଷ ତାର ମନର ଭାବକୁ ପ୍ରକାଶ କରେ, ସେଗୁଡ଼ିକ ତାର ଭାଷା । ସୁତରାଂ ମାନବର ଭାଷା ହେଲା ତା'ର ମାନସିକ ପ୍ରକ୍ରିୟାର ପ୍ରକାଶ ଓ ଆଦାନ ପ୍ରଦାନର ମାଧ୍ୟମ । ଗୋଟିଏ ଗୋଷ୍ଠୀର ଭାଷା ସେହି ଗୋଷ୍ଠୀର ସଂକୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ । ଏହି ଭାଷା କେବଳ ଲିଖିତ ବା କଥିତ ମାଧ୍ୟମର ଗଣ୍ଡି ମଧ୍ୟରେ ଆବଦ୍ଧ ନୁହେଁ । ମୂକ-ବଧିରର ଅଙ୍ଗଚାଳନା, ଶିଶୁର ହାସ୍ୟ-କ୍ରନ୍ଦନ, ଅଙ୍ଗ

ପ୍ରତ୍ୟଙ୍ଗର ପ୍ରକ୍ଷେପ ବା ଚାଳନା, ସୁସ୍ଥ ମାନବର ବିକଟ ହାସ୍ୟ, ମୁଖମଣ୍ଡଳର ସଙ୍କୋଚନ ଓ ପ୍ରସାରଣ, ଚକ୍ଷୁ ଚାଳନା ଓ ଶାରୀରିକ ସଙ୍କେତ ଏହି ଭାଷାର ଅନ୍ତର୍ଗତ । କିନ୍ତୁ ପ୍ରକୃତ ପକ୍ଷରେ ଏହି ଶାରୀରିକ ସଙ୍କେତ ଭାଷା ନୁହେଁ, ଯାହା କଥିତ ଓ ଲିଖିତ ତାହାହିଁ ଭାଷା । ମାନବ ପ୍ରଥମେ ତାର ଭାବନାକୁ ବ୍ୟକ୍ତ କରେ ଓ ପରେ ଏହି ବିକ୍ଷିପ୍ତ ଭାବନାକୁ ଶୃଙ୍ଖଳିତ କରି ଲିଖିତ ରୂପଦିଏ । କେବଳ ଏହି ବିଶେଷତ୍ୱ ମାନବକୁ ଇତର ପ୍ରାଣୀମାନଙ୍କଠାରୁ ସ୍ୱତନ୍ତ୍ର ରଖିଛି ।

## ଭାଷାର ଉତ୍ପତ୍ତି

ଭାଷାର ଉତ୍ପତ୍ତି ବିଷୟରେ ବହୁ ମତବାଦ ପ୍ରକାଶ ପାଇଛି । ସେଗୁଡ଼ିକ ନିମ୍ନରେ ଆଲୋଚିତ ହେଲା ।

(କ) ଭାଷା ଈଶ୍ୱରଦତ୍ତ (Divin Origin Theory)—ଅନେକଙ୍କ ମତରେ ଈଶ୍ୱର ସର୍ବପ୍ରଥମେ ମାନବକୁ ଏକ ଅଲୌକିକ ଘଟଣା ମାଧ୍ୟମରେ ଭାଷା ପ୍ରଦାନ କରିଥିଲେ । କାଳକ୍ରମେ ପୃଥିବୀର ବିଭିନ୍ନ ଭାଷା ଏଥିରୁ ଜନ୍ମଲାଭ କରିଛି । ପ୍ରାଚୀନ ଭାରତର 'ବାକ୍' ଓ ଗ୍ରୀସର 'ଲୋଗସ' ଏହି ମତର ସମର୍ଥକ, ଭାରତର ବୈଦିକ ଯୁଗର ପଣ୍ଡିତମାନେ ଦୃଢ଼ ଭାବରେ ଘୋଷଣା କରନ୍ତି ଯେ ସମସ୍ତ ଆଦିଜ୍ଞାନ ଶାସ୍ତ୍ରର ମୂଳବସ୍ତୁ ବ୍ରହ୍ମରୁ ଉତ୍ପତ୍ତି । 'ପ୍ରଣବ' ବା 'ଓଁକାର' ସମସ୍ତ ଉତ୍ପତ୍ତିର ମୂଳ । ସିଣ୍ଟ୍ ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ମଧ୍ୟ ଏହି ମତବାଦକୁ ସ୍ୱୀକାର କରନ୍ତି । ହିନ୍ଦୁମାନଙ୍କ ମତରେ ବୈଦିକ ଭାଷାହିଁ ଆଦିଭାଷା ଓ ଏହା ଈଶ୍ୱର ଦତ୍ତ । ଜୈନମାନଙ୍କ ମତରେ ଅର୍ଦ୍ଧମାଗଧୀହିଁ ଦେବଭାଷା ।

ମୁସଲମମାନଙ୍କର ବିଶ୍ୱାସ ଯେ ଭଗବାନ ପ୍ରଥମେ ମହମ୍ମଦଙ୍କୁ କୋରାନ୍‌ର ଭାଷା 'ଆରବୀ' ଶିକ୍ଷା ଦେଇ ଧର୍ମପ୍ରଚାର କରିବାକୁ ଆଦେଶ ଦେଇଥିଲେ । ଖ୍ରୀଷ୍ଟିଆନମାନଙ୍କର ଧାରଣା ଥିଲା ଯେ, 'ହିବ୍ରୁ' ହିଁ ପୃଥିବୀର ସବୁଠାରୁ ପ୍ରାଚୀନତମ ଭାଷା । ଏହିସବୁ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଭିନ୍ନ ଧର୍ମାବଲମ୍ବୀଙ୍କ ମତବାଦ ଯେପରି ଅମୂଳକ, ସେମାନଙ୍କ ଧାରଣା ସେହିପରି ଭ୍ରମାତ୍ମକ ।

(ଖ) ସଙ୍କେତାତ୍ମକ ମତବାଦ (Symbolic Theory)— କେତେକ ମତ ଦିଅନ୍ତି ଯେ ଭାଷା ମାନଙ୍କର ସୃଷ୍ଟି । ମାନବମନରେ ବିଭିନ୍ନ ଚିନ୍ତା, ଅନୁଭୂତି ପ୍ରଭୃତି ମାନସିକ ପରିଚାଳନା ହୋଇଥାଏ । ତେଣୁ ପ୍ରତ୍ୟେକ ଜାତି ତାର ମାନସିକ, ରାଜନୈତିକ, ସାମାଜିକ, ଭୌଗଳିକ ତଥା ଅନ୍ୟାନ୍ୟ ପ୍ରାକୃତିକ ପରିସ୍ଥିତିର ସମ୍ମୁଖୀନ ହୋଇ ନିଜର ଭାବ ବ୍ୟକ୍ତ କରିବା ନିମିତ୍ତ କେତେକ ସଙ୍କେତ ସୃଷ୍ଟି କରେ । ଏହି ସଙ୍କେତ ପ୍ରୟୋଗର ପରବର୍ତ୍ତୀ ସ୍ତରରେ ଭାଷାର ସୂତ୍ରପାତ ହୁଏ ।

ଧ୍ୱନ୍ୟାନୁକରଣ ବାଦ ( Bow-wow-Theory)—ଏହି ମତାନୁସାରେ ଭାଷା ପ୍ରାକୃତିକ ବସ୍ତୁ ଓ ପ୍ରାଣୀମାନଙ୍କ ଅନୁକରଣରୁ ସୃଷ୍ଟି ହୋଇଛି । ପ୍ରଥମେ ମାନବ ଅନୁକରଣ ପ୍ରିୟ ହୋଇ ଅନ୍ୟର ଧ୍ୱନିକୁ ଅନୁକରଣ କଲା । ଉଦାହରଣ ସ୍ୱରୂପ—ପବନ ମରମର, କୋକିଳର କୁହୁକୁହୁ, ନଦୀର କୁଳୁକୁଳୁ, ଶ୍ୱାନର ଭାଉଭାଉ ଇତ୍ୟାଦିକୁ ଅନୁକରଣ କରିବା ଫଳରେ କେତେଗୁଡ଼ିଏ ଶବ୍ଦ ସୃଷ୍ଟି ହେଲା । ଯଥା—

ମର୍‌ମର୍ > ମର୍ମର, ଦର୍‌ଦର୍ > ଦର୍ଦ୍ଦୁର, କୁହୁକୁହୁ > କୋକିଳ ଏହି ଶବ୍ଦ ଗୁଡ଼ିକ ସାହାଯ୍ୟରେ କାଳକ୍ରମେ ମାନବ

ନିଜର ଶୋକ, ଦୁଃଖ, ହର୍ଷ, ବିଷାଦ ଆଦି ଭାବନାକୁ ପ୍ରକାଶ କରିବାରେ ସକ୍ଷମ ହେଲା । ଜର୍ମାନ ପଣ୍ଡିତ ଲାଜାରସ ଏହି ମତର ପ୍ରବର୍ତ୍ତକ ।

(ଘ) ପ୍ରକ୍ଷେପ ବାଦ (Pooh-Pooh-Theory) ମାନବ ନିଜ ଶାରୀରିକ ଯନ୍ତ୍ରଣା, ଆନନ୍ଦ, ବିସ୍ମୟ ବା ସମବେଦନାକୁ ଯେଉଁସବୁ ଚିତ୍କାର ବା ଧ୍ୱନିରେ ପ୍ରଥମେ ପ୍ରକାଶ କଲା, ସେଥିମଧ୍ୟରୁ ଭାଷାର ସୃଷ୍ଟି ବୋଲି କେତେକ ଗବେଷକ ମତ ଦିଅନ୍ତି । ସେମାନଙ୍କ ମତାନୁସାରେ ମାନବ ଅନୁକୂଳ ଓ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ବେଦନାରୁ ଲାଘବ ପାଇବା ନିମିତ୍ତ ଯେଉଁ ଚିତ୍କାର କଲା ସେଥିରୁ ଭାଷାର ଜନ୍ମ ।

(ଙ) କୌତୂହଳବାଦ (Ding-dong-Theory)— ଜର୍ମାନ ପ୍ରଫେସର Heyse ଏହିମତର ପୃଷ୍ଠପୋଷକ । ତାଙ୍କ ମତରେ ଆଦିମ ମାନବ ଅରଣ୍ୟ ମଧ୍ୟରେ ବହୁ ଅଦ୍ଭୁତ ଜୀବ ଓ ପ୍ରାକୃତିକ ଦୃଶ୍ୟର ଦୃଷ୍ଟି ପଥାରୂଢ଼ ହୋଇ କୌତୂହଳ ବଶତଃ ସେ ଗୁଡ଼ିକର ନାମ କରଣ କରୁଥିଲା । ଯଥା—ଦ୍ରୁତଗାମୀ ପଶୁକୁ ଘୋଡ଼ା, ଜଳଭଣ୍ଡାରକୁ ଦେଖି ପୋଖରୀ ନାମରେ ନାମିତ କରୁଥିଲା । ଏହି ଶବ୍ଦ ଗୁଡ଼ିକୁ କ୍ରମେ ସେ ଭାଷାରେ ବ୍ୟବହାର କଲା । ତେଣୁ ଶବ୍ଦ ଅର୍ଥ ମଧ୍ୟରେ ଏକ ଅବିଚ୍ଛେଦ୍ୟ ସମ୍ପର୍କ ଥିବାର ଆମେ ଲକ୍ଷ୍ୟ କରୁ ।

(ଚ) କର୍ମ ଧ୍ୱନିବାଦ—(Yo-he-ho-Theory)— ବିଭିନ୍ନ କର୍ମ କ୍ଷେତ୍ରରେ ନିଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଆହ୍ୱାନ ଓ ଅନୁଜ୍ଞାକୁ କେନ୍ଦ୍ର କରି ଏହି ମତଟି ପରିପୁଷ୍ଟି ଲାଭ କରିଛି । ଗୋଟିଏ ବଡ଼ ଧରଣର କାର୍ଯ୍ୟ କରିବା ସମୟରେ ମିଳିତ ବଳର

ଆବଶ୍ୟକ ହୁଏ । କର୍ମରେ ପ୍ରେରଣା ନିମିତ୍ତ ସେମାନେ ମିଳିତ ଭାବରେ ଏକ ପ୍ରକାର ଧ୍ୱନି କରନ୍ତି । ଅନେକ ସମୟରେ ଏକ ଆନକୁ ଆହ୍ୱାନ କରିବାର ମଧ୍ୟ ଆବଶ୍ୟକତା ପଡେ । ଏଥି ମଧ୍ୟରୁ ଭାଷାର ସୃଷ୍ଟି ।

(ଛ) ସଂପର୍କୀୟ ମତବାଦ (Contact Theory)—ଏହି ଗୋଷ୍ଠୀର ପୃଷ୍ଠପୋଷକ Revesw ମତ ଦିଅନ୍ତି ଯେ, ମାନବ ଜନ୍ମଗତ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ସମାଜ ସୃଷ୍ଟି ପାଇଁ ଉଦ୍ୟମ କଲା । ତେଣୁ ଆଦି ମାନବ ସ୍ୱଜାତିପୁଙ୍କ ସହିତ ସଂପର୍କ ସ୍ଥାପନ କରି ଏକତ୍ର ବସବାସ କଲା । ପରସ୍ପର ମନର ଆଦାନ-ପ୍ରଦାନ ନିମିତ୍ତ ଧ୍ୱନି ସୃଷ୍ଟି କଲା । ସମୟ କ୍ରମେ ଏହି ଧ୍ୱନିହିଁ ଭାଷାରେ ପରିଣତ ହେଲା ।

(ଜ) ବିବର୍ତ୍ତନ ବାଦ (Evolutionary-Theory) ଏହି ମତର ପ୍ରଖ୍ୟାପକ Darwin ତାଙ୍କ Origin of the Species ଗବେଷଣା ପୁସ୍ତକରେ ଏହି ନୂତନ ମତବାଦ ପ୍ରଚାର କରିଛନ୍ତି । ଏହି ମତ ଆଧୁନିକ ଜଗତରେ ଏକ ଆନ୍ଦୋଳନ ସୃଷ୍ଟି କରିଛି । ଏହା ସର୍ବବାଦି ସମ୍ମତ । ଆଧୁନିକ ମାନବର ପର୍ଣ୍ଣାଙ୍ଗ ଅବୟବ ପରି ଭାଷା ମଧ୍ୟ ବିଭିନ୍ନ ବିବର୍ତ୍ତନ ଓ କ୍ରମବିକାଶର ମଧ୍ୟ-ଦେଇ ଉନ୍ନତତର ସୋପାନରେ ପଦାର୍ପଣ କରି ପାରିଛି । ମର୍କଟରୁ ମାନବର ସୃଷ୍ଟି, ବିଭିନ୍ନ କ୍ରମ-ବିକାଶ ମଧ୍ୟଦେଇ ଏହା ସମ୍ଭବ ହୋଇ ପାରିଛି । ଅଜ୍ଞାନ—ଶିଙ୍କାରରତ ଶିଶୁ ପରିଣତ ବୟସରେ ଯେଉଁପରି ଏକାଧିକ ଭାଷାରେ ପ୍ରବୀଣତା ଲାଭ କରିଥାଏ । ଡାର-ଉଇନଙ୍କ ଏହି ନୂତନ ଦର୍ଶନ ପୃଥିବୀରେ ଏକ ଯୁଗାନ୍ତର ସୃଷ୍ଟି କରିଛି ।

# ଭାଷାର ବିକାଶ

ଆଦିମାନବ ଇଙ୍ଗିତ ଦ୍ୱାରା ଅନ୍ୟର ନିକଟରେ ନିଜ ମନଭାବ ବ୍ୟକ୍ତ କରୁଥିଲା । କାଳକ୍ରମେ ଏହି ଇଙ୍ଗିତରୁ ଆଙ୍ଗିକ ଭାଷା ରୂପଲାଭ କଲା । ଜୀବନର ସୀମିତ ବା ମୌଳିକ ଭାବନା ଏହା ମଧ୍ୟରେ ସ୍ଥାନ ପାଇଲା । କିନ୍ତୁ ଏହି ଆଙ୍ଗିକ ଭାଷା ଦ୍ୱାରା ମାନବର ସମସ୍ତ ପ୍ରକାରଭାବ ଅଭିବ୍ୟକ୍ତ ହୋଇ ପାରିଲା ନାହିଁ । ତେଣୁ ବାଚକ ଭାଷାର ସୂତ୍ରପାତ ହେଲା । ଏହା ଦ୍ୱାରା ମନୁଷ୍ୟ ନିଜର ସମସ୍ତ ସମସ୍ୟା, ଭାବ, ବିଚାରବୁଦ୍ଧି ଓ ଆବେଗ ଇତ୍ୟାଦି ସହଜରେ ଅନ୍ୟ ନିକଟରେ ପ୍ରକାଶ କରିପାରିଲା । ଏହାକୁ ଚିରସ୍ଥାୟୀ କରିବା ପାଇଁ ଲିଖିତ ଓ ସ୍ଥିର ରୂପ ପ୍ରଦାନ କଲା । ମାନବ ଯେତେ ସଭ୍ୟ ଶିକ୍ଷିତ ହେଲା ସେତେ ନୂତନ ଲିଖନ ପ୍ରଣାଳୀ ଓ କୌଶଳ ଆବିଷ୍କାର କରିବାରେ ମନ ନିୟୋଗ କଲା । ଲିଖିତ ଭାଷାରୁ ଯାନ୍ତ୍ରିକ ଭାଷା ସୃଷ୍ଟି ହେଲା । ନିମ୍ନଲିଖିତ କାରଣ ଯୋଗୁ ଗୋଟିଏ ଭାଷାର ସମୃଦ୍ଧି ଓ ବିକାଶ ଘଟିଥାଏ ।

(କ) ଭୌଗଳିକ ବା ପ୍ରାକୃତିକ କାରଣ—ସାଧାରଣତଃ ଦେଖାଯାଏ ସମୁଦ୍ରକୂଳ ଓ ନଦୀତୀରବର୍ତ୍ତୀ ଅଞ୍ଚଳ ଉନ୍ନତ ଅଟେ । କାରଣ ହେଲା, ବନ୍ଦର ଦ୍ୱାରା ବାଣିଜ୍ୟ ଓ ଗମନାଗମନ ସୁବିଧା ଥିବାରୁ ବହୁ ଅଞ୍ଚଳରୁ ଲୋକ ଆସି ଏଠାରେ ଏକତ୍ରିତ ହୁଅନ୍ତି । ବିଭିନ୍ନ ଦେଶ ଭାଷାର ସଂସ୍ପର୍ଶରେ ଆସି ଏହି ଅଞ୍ଚଳର ଭାଷାରେ କ୍ଷିପ୍ର ଉନ୍ନତି ଘଟିଥାଏ । ଏହି ଅଞ୍ଚଳ ତୁଳନାରେ ପାହାଡ଼ିଆ ବା ଅରଣ୍ୟ ଅଞ୍ଚଳ ବହୁ ଅନୁନ୍ନତ ଅବସ୍ଥାରେ ଥାଏ । କାରଣ, ପ୍ରାକୃତିକ ବା ଭୌଗଳିକ ଅବସ୍ଥାନ ମାନବର ଖାଦ୍ୟ-ପେୟ, ଶରୀର ଗଠନ, ଭାଷା ଓ ସଭ୍ୟତାକୁ ନିୟନ୍ତ୍ରଣ କରିଥାଏ ।

(ଖ) ରାଜନୈତିକ ଓ ଅର୍ଥନୈତିକ କାରଣ—ଗୋଟିଏ ଦେଶ ଅନ୍ୟ ଦେଶରେ ରାଜତ୍ୱ କଲେ, ଦୁଇ ଦେଶର ଭାଷା ମିଶ୍ରଣରେ ନୂତନ ଶବ୍ଦ ସୃଷ୍ଟି ହୋଇଥାଏ । ପୁଣି, ଅର୍ଥାଭାବରୁ ଗୋଟିଏ ଦେଶର ଲୋକ ଅନ୍ୟ ଭାଷାଭାଷୀ ଅଞ୍ଚଳରେ କର୍ମ କଲେ, ଦୁଇ ଭାଷାର ସମ୍ମିଶ୍ରଣରେ ନୂତନ ଶବ୍ଦ ସୃଷ୍ଟି ହୁଏ । ଯଥା— ଇଂରାଜୀ Orderlyରୁ ଓଡ଼ିଆ ଅର୍ଦ୍ଦଳୀ, Hospitalରୁ ହାସ୍ପାତାଳ ଇତ୍ୟାଦି ଶବ୍ଦ ସୃଷ୍ଟି ହୋଇ ଭାଷାର ବିକାଶ ସାଧନ କରିଥାଏ ।

(ଗ) ସାଂସ୍କୃତିକ ଓ ସାହିତ୍ୟିକ କାରଣ—ମାନବ ଜ୍ଞାନାର୍ଜନ ନିମିତ୍ତ ଅନ୍ୟ ଦେଶର ସାହିତ୍ୟ ପାଠ କରେ ଓ ସଂସ୍କୃତି ଜାଣିବାକୁ ଆଗ୍ରହୀ ହୁଏ । ଫଳରେ, ତାର ଜ୍ଞାନ ପରିପକ୍ୱ ହୁଏ ଓ ଧୀଶକ୍ତି ସାଣିତ ହୁଏ । ସେ ଏହାକୁ ନୂତନ ଭାବରେ ନିଜ ସାହିତ୍ୟରେ ରୂପ ଦିଏ ଓ ସାଦୃଶ୍ୟ ଶବ୍ଦ ସୃଷ୍ଟି କରେ ।

(ଘ) ଧାର୍ମିକ କାରଣ—ନିଜ ଧର୍ମର ପ୍ରଚାର ଓ ପ୍ରସାର ନିମିତ୍ତ ଧର୍ମ ପ୍ରଚାରକମାନେ ଅନ୍ୟ ଦେଶକୁ ଶିଷ୍ୟମାନଙ୍କୁ ପ୍ରେରଣ କରନ୍ତି । ସେମାନେ ଅନ୍ୟ ଦେଶରେ ନିଜ ଭାଷା ମାଧ୍ୟମରେ ଧର୍ମପ୍ରଚାର କରନ୍ତି । ଫଳରେ ସେ ଦେଶରେ କେତେକ ନୂତନ ଶବ୍ଦର ସୃଷ୍ଟି ହୋଇ ଭାଷାର ବିକାଶ ସାଧନ କରେ ।

(ଙ) ବୈଜ୍ଞାନିକ କାରଣ—ବିଜ୍ଞାନର ଉନ୍ନତି ଯୋଗୁ ଭାଷାର ଦ୍ରୁତବିକାଶ ଘଟିଥାଏ । ରେଡ଼ିଓ, ସିନେମା, ଟେଲିଭିଜନରୁ ବିଭିନ୍ନ ଭାଷାର କଥା ଶୁଣି ବ୍ୟକ୍ତି ବିଶେଷ ନିଜ ଭାଷାରେ ତାହାର ପ୍ରୟୋଗ କରେ । ଏହା ଦ୍ୱାରା ଦୁଇ ଭାଷାର ମିଳନ ହୋଇ ନୂତନ ଶବ୍ଦ ସୃଷ୍ଟି ହୁଏ । ବୈଜ୍ଞାନିକ ଉପାୟରେ

ସୃଷ୍ଟି ଯନ୍ତ୍ରପାତିଗୁଡ଼ିକର ନାମ କରଣ ମଧ୍ୟ ଭାଷାର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିଥାଏ ।

(ଚ) ମନସ୍ତାତ୍ତ୍ୱିକ କାରଣ—ମନୁଷ୍ୟର ମାନସିକ ଅବସ୍ଥା ସର୍ବଦା ସମାନ ନ ଥାଏ । ବିଭିନ୍ନ ଅବସ୍ଥାରେ ମାନବ ଚିନ୍ତିତ ଥିବାବେଳେ ସମସ୍ତ ସମୟେ ତା ମନରୁ ନୂତନ ଶବ୍ଦ ଉଚ୍ଚାରିତ ହୋଇଥାଏ । ଏପରିକି ପାଗଳ ମଧ୍ୟ ଅନେକ ସମୟରେ ନୂତନ ଶବ୍ଦ ସୃଷ୍ଟି କରିବାକୁ କ୍ଷମ ହୁଏ । ଏହି ପରି ବହୁ କାରଣରୁ ପୃଥିବୀର ବିଭିନ୍ନ ଭାଷା ବିକାଶ ଦିଗରେ ଗତି କରି ଚାଲିଛି । ଏହାର ପଥରୋଧ ଅସମ୍ଭବ ।

## ଭାଷାତତ୍ତ୍ୱ ପଠନର ଉପାଦେୟତା

ନିର୍ଦ୍ଦିଷ୍ଟ ଏକ ମାନବ ଗୋଷ୍ଠୀର ଭାବର ଆଦାନ ପ୍ରଦାନ ଓ ସଞ୍ଚାରର ମାଧ୍ୟମ ହେଉଛି ଭାଷା । ଏହି ଭାଷାତତ୍ତ୍ୱର ଆଲୋଚନା ଫଳରେ ଆମେ ଉକ୍ତ ଗୋଷ୍ଠୀର ସମସ୍ତ ଆଚରଣ, ଆଚାର ବ୍ୟବହାର, ସାଂସ୍କୃତିକ ଓ ଐତିହାସିକ ଜ୍ଞାନ ଲାଭ କରି ଥାଉ । ମାନବର ବୌଦ୍ଧିକ ଚିନ୍ତାଧାରାର ବିକାଶ ନିମନ୍ତେ ଭାଷାତତ୍ତ୍ୱ ପଠନର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଭାଷାଚର୍ଚ୍ଚା ବ୍ୟତିରେକେ ପ୍ରାଚୀନ ସାହିତ୍ୟ ଆଲୋଚନା କରିବା କଷ୍ଟ ସାଧ୍ୟ ହୋଇଥାଏ । ଶିଳାଲେଖ, ତାମ୍ର ଫଳକ ବା ପ୍ରାଚୀନ ତାଳପତ୍ର ପୋଥିର ଭାଷା ଆଧୁନିକ ଭାଷାଠାରୁ ପୃଥକ । ତେଣୁ ଭାଷାତତ୍ତ୍ୱ ସମ୍ବନ୍ଧରେ ସମ୍ୟକଜ୍ଞାନ ନଥିଲେ ଏହି ସାହିତ୍ୟ ଉପେକ୍ଷଣୀୟ ହୋଇ ରହିବ । ପ୍ରାଚୀନ ଲିପି ତତ୍ତ୍ୱ ଓ ଭାଷାଜ୍ଞାନ ନିମିତ୍ତ ଭାଷାତତ୍ତ୍ୱ ପଠନର ଉପାଦେୟତା ରହିଛି । ଅନ୍ୟ ଦେଶର ସଭ୍ୟତା, ସଂସ୍କୃତି ଓ

ସାହିତ୍ୟର ଆଲୋଚନା ପାଇଁ ଏହାର ଆବଶ୍ୟକତା ଏକାନ୍ତ ପ୍ରୟୋଜନ ।

ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରବେଶ କଲେ ଯେପରି ସେ ଦେଶର ଭାଷାକୁ ଅଧ୍ୟୟନ କରିବାର ଆବଶ୍ୟକତା ରହିଛି, ନିଜ ଦେଶର ଗୌରବମୟ ଅତୀତକୁ ଆବିଷ୍କାର କରିବାପାଇଁ ହେଲେ ସେହିପରି ପ୍ରାଚୀନ ଭାଷା-ପଠନର ଉପାଦେୟତା ଅତ୍ୟାବଶ୍ୟକ । ଆଧୁନିକ ଯୁଗରେ ପ୍ରତୀକ ଧର୍ମୀ ଦର୍ଶନତତ୍ତ୍ୱ ବା Symbolic Logic ପଠନ ନିମିତ୍ତ ଭାଷାତତ୍ତ୍ୱ ଆଲୋଚନାର ଅପରିହାର୍ଯ୍ୟ । ଆଜିର ଭାଷାତତ୍ତ୍ୱବିତ୍‌ମାନେ ମୂକ, ଜଡ଼ ପ୍ରଭୃତି ଅକର୍ମଣ୍ୟ ବ୍ୟକ୍ତିଙ୍କୁ ବୈଜ୍ଞାନିକ ଉପାୟରେ ଶିକ୍ଷା ଦେଉଛନ୍ତି । ଏହିସବୁ ଆଲୋଚନାରୁ ସ୍ପଷ୍ଟଭାବେ ପ୍ରତିପାଦିତ ହୁଏ ଯେ ଭାଷାପରି ଭାଷାର ଆଲୋଚନା ଓ ଅଧ୍ୟୟନ ମଧ୍ୟ ଯୁଗେ ଯୁଗେ ମାନବର କଲ୍ୟାଣ ସାଧନ କରି ଆସୁଅଛି ।

## ଭାଷାର ବର୍ଗୀକରଣ (Classification of language)

ଭାଷାବିତ୍‌ମାନେ ପୃଥିବୀର ଭାଷାବର୍ଗକୁ ପ୍ରଧାନତଃ ଦୁଇଭାଗରେ ବିଭକ୍ତ କରିଥାନ୍ତି । ପ୍ରଥମତଃ, ବାକ୍ୟ ଯୋଜନାଗତ ବା ଆକୃତି ମୂଳକ (Syntactical or morphological) ଏବଂ ବଂଶଗତ ବା ଐତିହାସିକ ପାରିବାରିକ (Genealogical or Historical)

୧-ବାକ୍ୟଯୋଜନାଗତ ବା ଆକୃତି ମୂଳକ :—ବାକ୍ୟ ବିଭିନ୍ନ ଭାଷା ମଧ୍ୟରେ ଥିବା ସାମ୍ୟ-ବୈଷମ୍ୟକୁ ଦର୍ଶାଇ ଦିଏ । ଶବ୍ଦ ଓ ପ୍ରତ୍ୟୟକୁ ନେଇ ଭାଷା ଗଠିତ ହୁଏ । ବାକ୍ୟରେ ଶବ୍ଦ ମାନଙ୍କ

ମଧ୍ୟରେ ପରସ୍ପର ସମ୍ବନ୍ଧ ପ୍ରତ୍ୟୟ ଯୋଗରେ ପ୍ରତିଷ୍ଠିତ ହୁଏ । ଶବ୍ଦ ଓ ପ୍ରତ୍ୟୟ ବିନ୍ୟାସ ପ୍ରକ୍ରିୟାର ପାର୍ଥକ୍ୟରେ ଭାଷାର ଆକୃତିଗତ ବୈଚିତ୍ର୍ୟ ଦେଖାଯାଏ । କାରଣ, କେତେକ ଭାଷାରେ ପ୍ରତ୍ୟୟ ମୁକ୍ତ ଭାବରେ ରହେ, କେତେକରେ ସଂଯୁକ୍ତ ହୁଏ ଓ ଅନ୍ୟ କେତେକରେ ସମ୍ପୂର୍ଣ୍ଣ ସଂଶ୍ଳିଷ୍ଟ ହୋଇଥାଏ । ଏହି ସ୍ତରର ଭିନ୍ନତା ଅନୁସାରେ ପୃଥିବୀର ଭାଷମାନଙ୍କର ବର୍ଗୀକରଣ କରାଯାଏ । ଏହାକୁ ରୂପଗତ ବର୍ଗୀକରଣ କୁହାଯାଏ । ଏହା ଦୁଇଭାଗରେ ବିଭକ୍ତ; ଯଥା—(କ) ଅଯୋଗାତ୍ମକ (Inorganic or Isolating ଓ (ଖ) ସଂଯୋଗାତ୍ମକ (Organic)

ଅଯୋଗାତ୍ମକ:—ଏଥିରେ ଶବ୍ଦ ଓ ପ୍ରତ୍ୟୟ ବାକ୍ୟ ମଧ୍ୟରେ ସଂସ୍ଥାନ ଅନୁସାରେ ଅନ୍ୱିତ ହୋଇଥାନ୍ତି । ଏହି ଭାଷାରେ ଉପସର୍ଗ ଓ ପ୍ରତ୍ୟୟ ଯୁକ୍ତ ହୁଏ ନାହିଁ । ଅଯୋଗାତ୍ମକ ଭାଷାରେ ପ୍ରତ୍ୟେକ ଶବ୍ଦର ସ୍ୱତନ୍ତ୍ର ସତ୍ତା ନିହିତ ଥାଏ । ପ୍ରତ୍ୟେକ ଶବ୍ଦର ଅର୍ଥଭିନ୍ନ । କେବଳ ବାକ୍ୟରେ ବ୍ୟବହାର ସମୟରେ ଶବ୍ଦଗୁଡ଼ିକର ପରସ୍ପର ସମ୍ବନ୍ଧ ଜଣାଯାଏ । ଚୀନା ଭାଷା ଏହାର ପ୍ରକୃଷ୍ଟ ଉଦାହରଣ । ଏହି ଭାଷାର ବ୍ୟାକରଣ ପ୍ରାୟ ନାହିଁ । ବାକ୍ୟରେ ବ୍ୟବହୃତ ଶବ୍ଦଗୁଡ଼ିକହିଁ ନିଜର ସଂସ୍ଥାନ ଅନୁଯାୟୀ ବିଶେଷ୍ୟ, ବିଶେଷଣ ଓ କ୍ରିୟାଦିର ପରିଚୟ ଦେଇଥାନ୍ତି । ଉଦାହରଣ ସ୍ୱରୂପ—'ତାଜନ୍' ର ଅର୍ଥ ବଡ଼ ମଣିଷ, ସେଇ ଶବ୍ଦର ଅଳ୍ପ ପରିବର୍ତ୍ତନ କରି କହିଲେ—'ଜନ୍ତା'ର ଅର୍ଥହେବ ମନୁଷ୍ୟ ବଡ଼ ଅଟେ ।

ସଂଯୋଗାତ୍ମକ:—ଏହି ଭାଷାରେ ଶବ୍ଦ ଓ ପ୍ରତ୍ୟୟ ରୂପାନ୍ତରିତ ହୋଇ ପରସ୍ପର ସହିତ ସଂଯୁକ୍ତ ହୁଏ । ପୂର୍ବୋକ୍ତ ଭାଷାରେ ଶବ୍ଦର ସ୍ୱତନ୍ତ୍ର ସତ୍ତାନାହିଁ । ଗୋଟିଏ ଶବ୍ଦ ଅନ୍ୟ ଗୋଟିଏ

ଶବ୍ଦସହ କିମ୍ବା ଶବ୍ଦର ମୂଳଧାତୁ ସହ ପ୍ରତ୍ୟୟ ଯୋଗହୋଇ ଶବ୍ଦ ଗଠିତ ହୁଏ । ତେଣୁ ଏହାକୁ ସଂଯୋଗାତ୍ମକ ଭାଷାବୋଲି କୁହାଯାଏ । ଏହା ଆକୃତି ଦୃଷ୍ଟିରୁ ତିନିଭାଗରେ ବିଭକ୍ତ; ଯଥା:—(କ) Inflecting ବା ବିଭକ୍ତି ପ୍ରଧାନ, (ଖ) Agglutinating ବା ପ୍ରତ୍ୟୟ ପ୍ରଧାନ ବାଯୋଗାତ୍ମକ, (ଗ) Incorporating ବା ସଂଶ୍ଲେଷାତ୍ମକ ବା ସମାସ ପ୍ରଧାନ ।

ବିଭକ୍ତି ପ୍ରଧାନ: —ବିଭକ୍ତି ପ୍ରଧାନଭାଷା ଦୁଇଭାଗରେ ବିଭକ୍ତ ଯଥା —ଅନ୍ତର୍ମୁଖୀ ବିଭକ୍ତି ପ୍ରଧାନ ଓ ବହିର୍ମୁଖୀ ବିଭକ୍ତି ପ୍ରଧାନ ଭାଷା । ସେମେଟିକ୍ ଓ ହେମେଟିକ୍ ଗୋଷ୍ଠୀର ଭାଷା ଅନ୍ତର୍ମୁଖୀ ବିଭକ୍ତି ପ୍ରଧାନ ଶ୍ରେଣୀର ଅନ୍ତର୍ଗତ । ଅନ୍ତର୍ମୁଖୀ ବିଭକ୍ତି ପ୍ରଧାନ ପୁନର୍ବାର ଦୁଇଭାଗରେ ବିଭକ୍ତ; ଯଥା— ସଂଯୋଗାତ୍ମକ ( Syntihetic ) ଓ ଅନ୍ତର୍ମୁଖୀ ବିଯୋଗାତ୍ମକ ( Analytic ) । ଆରବୀ ଆଦି ସେମେଟିକ୍ ଭାଷାଗୁଡ଼ିକର ପ୍ରାଚୀନରୂପ ସଂଯୋଗାତ୍ମକ ଏବଂ ହିବ୍ରୁ ବିଯୋଗାତ୍ମକ ଭାଷାର ଅନ୍ତର୍ଗତ ।

ବହିର୍ମୁଖୀ ବିଭକ୍ତି ପ୍ରଧାନ ଭାଷା ଦୁଇଭାଗରେ ବିଭକ୍ତ, ଯଥା —ସଂଯୋଗାତ୍ମକ ବହିର୍ମୁଖୀ ପ୍ରଧାନ ଓ ବିଯୋଗାତ୍ମକ ବହିର୍ମୁଖୀ ପ୍ରଧାନ । ଭାରତୀୟ ପରିବାରର ପ୍ରାଚୀନଭାଷା, ଗ୍ରୀକ୍ ଲାଟିନ୍, ସଂସ୍କୃତ ଓ ଆବେସ୍ତାଦିରେ ବହିର୍ମୁଖୀ ସଂଯୋଗାତ୍ମକ ବିଭକ୍ତି ପ୍ରଧାନ ଭାଷା ଦେଖାଯାଏ । ଭାରତୀୟ ପରିବାରର ଅଧିକାଂଶ ଭାଷା ଆଧୁନିକ ଯୁଗରେ ବିଯୋଗାତ୍ମକ ବହିର୍ମୁଖୀ ବିଭକ୍ତି ପ୍ରଧାନ ଭାଷା ହୋଇ ଯାଇଛି । ବିଭକ୍ତି ଗୁଡ଼ିକ ଧୀରେ ଧୀରେ ବ୍ୟବହୃତ ନହୋଇ ଲୁପ୍ତପ୍ରାୟ ହୋଇ ଗଲାଣି । ଶବ୍ଦଗୁଡିକ ସାହାଯ୍ୟକାରୀ କ୍ରିୟା ଭାବରେ ବ୍ୟବହୃତ ହେଉଛି ।

ସଂଯୋଗାତ୍ମକଃ—ସଂଯୋଗାତ୍ମକ ଭାଷା ତିନିଭାଗରେ ବିଭକ୍ତ ଯଥା—(କ) ପୂର୍ବ ପ୍ରତ୍ୟୟ ଯୋଗାତ୍ମକ—ଏହି ଭାଷାରେ ପ୍ରତ୍ୟୟ ସ୍ଥାନରେ ଉପସର୍ଗର ପ୍ରୟୋଗ ହୁଏ । ବାକ୍ୟ ଅନ୍ତର୍ଗତ ଶବ୍ଦଗୁଡ଼ିକ ଅଲଗା ଅଲଗା ରହିଥାନ୍ତି । ଉଦାହରଣ ସ୍ୱରୂପ କାଫିର ଭାଷାରେ—

କୁ—ସମ୍ପ୍ରଦାନ କାରକର ଚିହ୍ନ ।

ନ—ତାହାର ।

ଦୁଇଟିର ସମ୍ମିଶ୍ରଣରେ ଶବ୍ଦ ଗଠିତ ହେଲେ "କୁନ" ଅର୍ଥାତ୍ 'ତାହାକୁ' । (ଖ) ପରପ୍ରତ୍ୟୟ ଯୋଗାତ୍ମକଃ—ଏହି ଭାଷାରେ ପ୍ରତ୍ୟୟ କେବଳ ଅନ୍ତଃରେ ଯୋଗ କରାଯାଏ । ଦ୍ରାବିଡ଼ ପରିବାରର ଭାଷା ଏହି ଶ୍ରେଣୀର । ଏହାର ଉଦାହରଣ ତୁର୍କୀ ଭାଷାରୁ ନିଆଯାଇ ପାରେ—

ଏବ—ଘର

ଏବଲେର୍—କାହାର ଘର

ଏବ୍‌ଲେରହମ୍—ମୋର ଘର ।

(ଗ) ପୂର୍ବ ପର ପ୍ରତ୍ୟୟ ଯୋଗାତ୍ମକ—ଏହି ଭାଷାରେ ଶବ୍ଦ ଓ ଅର୍ଥର ଯୋଗ ଦୁଇ ପ୍ରକାରରେ ହୋଇଥାଏ । ଯଦି ଶବ୍ଦ ଦୁଇ ଅକ୍ଷର ବିଶିଷ୍ଟ ହୋଇ ଥାଏ, ତା ହେଲେ ପ୍ରତ୍ୟୟ ମଝିରେ ଯୋଗ କରାଯାଏ । ଶବ୍ଦ ଦୁଇ ଅକ୍ଷରରୁ ଅଧିକ ହେଲେ ପ୍ରତ୍ୟୟ "ଆଦ୍ୟ ତଥା ପ୍ରାନ୍ତରେ ଯୋଗ କରାଯାଏ ।"

ସାନ୍ତାଳ ଭାଷାରେ—"ମହିର" ଅର୍ଥ ମୁଖିଆ ଓ "ଫ" ବହୁ ବଚନର ଚିହ୍ନ । ଏହି ଠାରେ 'ଫ' ମଧ୍ୟ ସ୍ଥଳରେ ଯୁକ୍ତ ହୋଇ "ମଫହି" ଶବ୍ଦର ସୃଷ୍ଟି ହୋଇଛି, ଯାହାର ଅର୍ଥ ମୁଖିଆ ଲୋକ, ଆଦି ଓ ଅନ୍ତ ପ୍ରତ୍ୟୟର ଉଦାହରଣ 'ମକୋର' ଭାଷାରୁ ନିଆଯାଇ ପାରେ । "ମ୍ନଟ୍" ଅର୍ଥ ଶୁଣିବା, "ଜ-ମ୍ନଟ୍-ଉ" ଶବ୍ଦରେ ଆଦି ଓ ଅନ୍ତରେ ଯଥାକ୍ରମେ 'ଜ'ଓ'ଉ' ପ୍ରତ୍ୟୟ ଯୋଗ ହେବାରୁ ଶବ୍ଦଟିର ଅର୍ଥ ହେଲା 'ମୁଁ ତୁମର କଥା ଶୁଣୁଅଛି ।'

(ଘ) ଆଂଶିକ ଯୋଗାତ୍ମକ ପ୍ରଧାନ—ଏହି ଭାଷାରେ ଅପୃଷ୍ଠା-ବୟବ ଓ ପୃଷ୍ଠାବୟବ ଭାଷାର ଚିହ୍ନ ଦେଖାଯାଏ । ପୁନଶ୍ଚ ଏହି ଭାଷାରେ ବିଭକ୍ତି ପ୍ରଧାନ ଓ ସମାସ ପ୍ରଧାନ ଭାଷା ସହିତ କିଛି ସାମଞ୍ଜସ୍ୟ ଦେଖାଯାଏ । ଯଥା—'ବେଦ ଶବ୍ଦରେ 'ଇକ' ପ୍ରତ୍ୟୟ ଯୋଗ ହୋଇ 'ବୈଦିକ' ହୋଇଛି ।

୨—ବଂଶଗତ ବା ଐତିହାସିକ ପାରିବାରିକ—ବିଭିନ୍ନ ଭାଷାର ତୁଳନାତ୍ମକ ବିଚାର କରି ଶବ୍ଦ ସାଦୃଶ୍ୟ, ଗଠନତନ୍ତ୍ର, ଐତିହାସିକ ସମ୍ବନ୍ଧ ଇତ୍ୟାଦି ଭିତ୍ତିରେ ଭାଷାଗୁଡ଼ିକୁ ବର୍ଗୀକରଣ କରାଯାଇଥାଏ । ତୁଳନାତ୍ମକ-ଭାଷାତତ୍ତ୍ୱବିତ ପଣ୍ଡିତମାନେ ଏହିପରି ଆଲୋଚନା କରି ପୃଥିବୀର ବିଭିନ୍ନ ଭାଷାବର୍ଗଙ୍କୁ କେତେଗୁଡ଼ିଏ ପରିବାରବଦ୍ଧ କରିଛନ୍ତି । ବର୍ତ୍ତମାନ ସୁଦ୍ଧା ଆହୁରି ଅନେକ ଭାଷାର ବଂଶ ନିରୂପଣ ହୋଇପାରି ନାହିଁ । କେତେକ ବିଶିଷ୍ଟ ଭାଷା ପରିବାର ମଧ୍ୟରେ ହେଲେ (କ) ଭାରତ-ଇଉରୋପୀୟ, (ଖ) ସେମେଟିକ ହେମେଟିକ, (ଗ) ବାଣ୍ଟୁ (ଘ) ଚୀନ-ତିବ୍ବତୀୟ (ଙ) ଅଷ୍ଟ୍ରିକ, (ଚ) ଦ୍ରାବିଡ଼, (ଛ) କକେଶୀୟ, (ଜ) ତୁର୍କ, ମଙ୍ଗଲ, ମାଞ୍ଚୁ, (ଝ) ଫିନୋଉଗ୍ରୀୟାନ, (ଞ) ମଧ୍ୟ ଆଫ୍ରିକା ବର୍ଗୀୟ

(୫) ଶେଷକୁଳ ଇତ୍ୟାଦି । ଏହା ବ୍ୟତୀତ ଏସ୍କିମୋ, ବୁସ୍‌ମେନ ଭାଷା, ପଶାନ୍ତ ମହାସାଗରୀୟ ଭାଷା ଓ ଆମେରିକାର କେତେକ ଅଧିବାସୀଙ୍କ ଭାଷା କୌଣସି ଉଲ୍ଲିଖିତ ଶ୍ରେଣୀର ଅନ୍ତର୍ଗତ ହୋଇପାରିନାହିଁ ।

**ଭାରତ**—ୟୁରୋପୀୟକୁଳର ଭାଷା ଗୁଡ଼ିକ ବିଭାଜିତ ହୋଇ 'କେଣ୍ଟମ' ଓ 'ଶତମ' ରୂପେ ପରିଚିତ ହେଲା କେଣ୍ଟମ ଭାଷାରୁ ଗ୍ରୀକ ଲାଟିନ ଓ ଶତମ ଭାଷା ଅନେକ ଭାଗରେ ବିଭକ୍ତ ହୋଇ ଭାରତୀୟ ଆର୍ଯ୍ୟ ଭାଷାର ସୂତ୍ରପାତ ହେଲା ।

---

## ଭାଷା କାହିଁକି ପରିବର୍ତ୍ତିତ ହୁଏ

ଭାଷା ପରିବର୍ତ୍ତନ ହେବାରେ ଦୁଇଟି କାରଣ ଦେଖାଯାଏ । ଗୋଟିଏ ହେଲା ବାହ୍ୟିକ ଓ ଅନ୍ୟଟି ଆଭ୍ୟନ୍ତରୀଣ କାରଣ । ଗୋଟିଏ ଭାଷାଭାଷି ଅଞ୍ଚଳର ଜନସାଧାରଣ ଅନ୍ୟ ଗୋଟିଏ ଦେଶର ସାହିତ୍ୟ ଓ ସଂସ୍କୃତି ଆଲୋଚନା କଲେ ତା'ର ପ୍ରଭାବ ପୂର୍ବୋକ୍ତ ଭାଷାକୁ ପ୍ରଭାବିତ କରିବା ସ୍ୱାଭାବିକ । ରାଜନୈତିକ ଓ ଅର୍ଥନୈତିକ କାରଣରୁ ମଧ୍ୟ ଗୋଟିଏ ଦେଶର ଲୋକ ଅନ୍ୟ ଦେଶରେ ରହିଲେ ସେମାନଙ୍କ ଭାଷାରେ ଆବିଳତା ଲକ୍ଷ୍ୟ କରାଯାଏ । ଦେଶର ସାମାଜିକ ଓ ଭୌଗଳିକ ଅବସ୍ଥାନ ମଧ୍ୟ ଭାଷାର ପରିବର୍ତ୍ତନରେ ସହାୟତା କରେ । ବୈଜ୍ଞାନିକ ଉଦ୍ଭାବନ ଓ ଅନ୍ୟ ଏକ ଦେଶରେ ସ୍ୱଧର୍ମର ପ୍ରଚାର ଦ୍ୱାରା ଭାଷାର ପରିବର୍ତ୍ତନ ହୁଏ ।

ଆଭ୍ୟନ୍ତରୀଣ କାରଣ ମଧ୍ୟରେ ଶାରୀରିକ ଅକ୍ଷମତା, ମାନସିକ ବିକୃତି ଓ ଅନୁକରଣ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ଭାଷାରେ ପରିବର୍ତ୍ତନ ଆସିଥାଏ । ଧ୍ୱନିତତ୍ତ୍ୱ, ଅର୍ଥତତ୍ତ୍ୱ ଓ ସାଦୃଶ୍ୟର ଆଲୋଚନାରେ ଜଣାଯାଏ ଯେ ଭାଷାର ଏକ ବ୍ୟାପକ ଅଂଶ ଏ ଗୁଡ଼ିକ ଦ୍ୱାରା ପରିବର୍ତ୍ତିତ ହେଉଛି ।

### ଧ୍ୱନି ପରିବର୍ତ୍ତନ (Phonetic Phenomena)

ଗୋଟିଏ ଶବ୍ଦ ଏକ ଭାଷାରୁ ଅନ୍ୟ ଭାଷାକୁ ପରିବର୍ତ୍ତିତ ହେଲାବେଳେ ଏହାର ଉଚ୍ଚାରଣଗତ ରୂପ ବଦଳିଯାଏ । ପୁଣି

କାଳକ୍ରମେ କେତେକ ଶବ୍ଦ ଗୋଟିଏ ଭାଷାରେ ଥାଇ ମଧ୍ୟ ବିଭିନ୍ନ ରୂପ ଧାରଣ କରେ । ଶବ୍ଦର ପରିବର୍ତ୍ତନ ସଂପୂର୍ଣ୍ଣ ରୂପେ ଧ୍ୱନି ଉପରେ ନିର୍ଭର କରେ । ଧ୍ୱନି ପରିବର୍ତ୍ତନରେ କିପରି ଶବ୍ଦର ପରିବର୍ତ୍ତନ ହୁଏ ତାହା ଲକ୍ଷ୍ୟ କରିବାର କଥା ।

୧—ସମୀଭବନ (Assimilation) :—ଉଚ୍ଚାରଣରେ ବେଳେବେଳେ ଦୁଇଟି ଧ୍ୱନି ଅତ୍ୟନ୍ତ ନିକଟରେ ଉଚ୍ଚାରିତ ହୋଇପାରନ୍ତି ନାହିଁ । ଏହାର ପ୍ରଧାନ କାରଣ ସେହି ଧ୍ୱନିର ନିକଟବର୍ତ୍ତୀତା ଯୋଗୁ ଧ୍ୱନିଭଙ୍ଗ ହୁଏ । ଏହାଦ୍ୱାରା ଏକ ଧ୍ୱନି ଅନ୍ୟ ଧ୍ୱନିର ପ୍ରଭାବରେ ପ୍ରଭାବିତ ହୋଇ ଅଳ୍ପ ବା ବହୁ ପରିମାଣରେ ପୂର୍ବ ଧ୍ୱନିର ସମାନତା ଲାଭ କରେ । ଏହାକୁ ସମୀଭବନ କୁହାଯାଏ । ଏହି ସମୀଭବନ ଉପରେ ସଂସ୍କୃତ ଓ ଓଡ଼ିଆର ପ୍ରାୟ ସମସ୍ତ ସନ୍ଧି ନିର୍ଭର କରେ । ଏହା ତିନି ପ୍ରକାର ଯଥା— ପ୍ରଗତି ବା ପୂର୍ବ ସମୀଭବନ (Progressive Assimilation) (ଖ) ପରାଗତି ବା ପରସମୀଭବନ (Regressive Assimilation) ଏବଂ (ଗ) ଅନ୍ୟୋନ୍ୟ ସମୀଭବନ (Mutual Assimilation)

ପ୍ରଗତି ବା ପୂର୍ବ ସମୀଭବନ :—ଯେଉଁ ସମୀଭବନରେ ପୂର୍ବବର୍ତ୍ତୀ ଧ୍ୱନି ପରବର୍ତ୍ତୀ ଧ୍ୱନିକୁ ପରିବର୍ତ୍ତିତ କରେ ତାହାକୁ ପ୍ରଗତି ସମୀଭବନ କୁହାଯାଏ । ଓଡ଼ିଆ ସ୍ୱର ସନ୍ଧିମାନଙ୍କରେ ଏହା ପରିଲକ୍ଷିତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ—

ପଦ୍ମ > ପଡ଼ଡ଼
ଚକ୍ର > ଚକ୍‌କ
ମୁକ୍ତ > ମୁକ୍‌କ, ପକ୍ୱ > ପକ୍‌କ
ଲଗ୍ନ > ଲଗ୍‌ଗ,

ପରାଗତ ସମୀଭବନ :—ପରବର୍ତ୍ତୀ ଧ୍ୱନ ପୂର୍ବବର୍ତ୍ତୀ ଧ୍ୱନକୁ ବଦଳାଇଲେ ପରାଗତ ସମୀଭବନ ହୁଏ । ସଂସ୍କୃତ ବ୍ୟଞ୍ଜନ ସନ୍ଧିରେ ଏହାର ଦୃଷ୍ଟାନ୍ତ ସୁଲଭ, ଯଥା—

ଚତ୍ + ମୟ = ଚନ୍ମୟ,
ବାର + ଏକ = ବାରେକ,
ଆର + ଏକ = ଆରେକ,

ଅନ୍ୟୋନ୍ୟ ସମୀଭବନ :—ନିକଟବର୍ତ୍ତୀ ଧ୍ୱନଦ୍ୱୟ ପରସ୍ପରର ପ୍ରଭାବରେ ଉଭୟେ ପରିବର୍ତ୍ତିତ ହେଲେ ଅନ୍ୟୋନ୍ୟ ସମୀଭବନ ହୁଏ । ଉଦାହରଣ ସ୍ୱରୂପ—

ମତ୍ + ସ୍ୟ = ମତ୍ସ୍ୟ
ନର + ଇନ୍ଦ୍ର = ନରେନ୍ଦ୍ର
(ସଂ) ମଧ୍ୟ > (ପ୍ରା) ମଜ୍ଝ > (ଓ) ମଝି
ଉତ୍ + ଶ୍ୱାସ = ଉଚ୍ଛ୍ୱାସ,

୨—ବିଷମୀ ଭବନ ( Dissimilation )—ପଦ ମଧ୍ୟରେ ବା ଶବ୍ଦରେ ଦୁଇଟି ସମଧ୍ୱନଥିଲେ ଗୋଟିକର ଧ୍ୱନ ପରିବର୍ତ୍ତନ ହୁଏ । ଏହାକୁ ବିଷମୀ ଭବନ କୁହନ୍ତି । ଯଥା—

(ସଂସ୍କୃତ ସମ୍ମତ > (ଓଡ଼ିଆ) ସନମତ
,, ସମ୍ମାନ > ,, ସନମାନ
,, ଲଲାଟ > ,, ନଲାଟ
,, ପିପିଲିକା > ,, କିପିଲିକା

୩—ବର୍ଣ୍ଣ ବିପର୍ଯ୍ୟୟ ( Metathesis ):—ପଦ ମଧ୍ୟ-ସ୍ଥିତ ଦୁଇଟି ଧ୍ୱନର ସ୍ଥାନ ପରିବର୍ତ୍ତନ ହେଲେ, ଅର୍ଥାତ ପୂର୍ବଧ୍ୱନ

ପରକୁ ଓ ପରଧ୍ୱନ ପୂର୍ବକୁ ଯାଇଥାଏ, ତାହାକୁ ବର୍ଣ୍ଣବିପର୍ଯ୍ୟୟ କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ—

(ଆଭେସ୍ତା) ଭଫ୍ର>(ପାର୍ଥିଆନ) ବ୍ରଫ>(ଓଡ଼ିଆ) ବରଫ
(ସଂସ୍କୃତ) ହ୍ରଦ>(ପାଲି) ଦହ
(") କୋଟର>(ଓଡ଼ିଆ) କୋରଡ଼
(ଇଂରାଜୀ) ବକ୍ସ>(") ବାକ୍ସ>(ବଙ୍ଗଳା) ବାସ୍କ

୪—ଆଦିସ୍ୱର ଲୋପ ( Aphesis )—ଧ୍ୱନି ପରିବର୍ତ୍ତନରେ ଆଦ୍ୟସ୍ୱର ଲୋପପାଇଗଲେ ତାକୁ ଆଦିସ୍ୱର ଲୋପ କୁହାଯାଏ । ଯଥା—

(ସଂସ୍କୃତ) ଅଭ୍ୟନ୍ତର>(ଓଡ଼ିଆ) ଭିତର
,, ଅପିହିତ > ,, ପିହିତ
,, ଆଲାଉ > ,, ଲାଉ ।

୫—ମଧ୍ୟସ୍ୱର ଲୋପ ( Syncope )—ଯେଉଁ ଧ୍ୱନିରେ ମଧ୍ୟସ୍ୱର ଉହ୍ୟ ବା ଲୋପ ପାଇଥାଏ, ତାକୁ ମଧ୍ୟସ୍ୱର ଲୋପ କୁହାଯାଏ । ଦୃଷ୍ଟାନ୍ତ—

(ସଂସ୍କୃତ) କର୍ମକାର>(ଓଡ଼ିଆ) କମାର
" କୁମ୍ଭକାର> " କୁମ୍ଭାର
" ଭିକ୍ଷାକାରୀ> " ଭିକାରୀ
" ଭଗିନୀ > " ଭଗ୍ନୀ
" ନଗର > " ନଗ୍ର ।

୬—ଅନ୍ତଃସ୍ୱରଲୋପ (Apocape) :—ଧ୍ୱନି ଲୋପରେ ଶେଷ ସ୍ୱର ବା ଅନ୍ତଃସ୍ୱର ଲୋପ ପାଇଲେ ଏହାକୁ ଅନ୍ତଃସ୍ୱରଲୋପ କୁହାଯାଏ । ଦୃଷ୍ଟାନ୍ତ—

(ସଂସ୍କୃତ) ଆକାଶ> (ବଙ୍ଗଳା) ଆକାଶ୍
,, ଜଳ > ,, ଜଲ୍

୭—ମୂର୍ଦ୍ଧନ୍ୟୀକରଣ (Cerebralisation) :—ଋ, ର, ଷ ପ୍ରଭୃତି ମୂର୍ଦ୍ଧନ୍ୟ ବ୍ୟଞ୍ଜିତ ଧ୍ୱନିର ସଂସ୍ପର୍ଶ ଯୋଗୁ ଦନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣ ମୂର୍ଦ୍ଧନ୍ୟ ହେଲେ ତାହାକୁ ମୁର୍ଦ୍ଧନୀକରଣ କହନ୍ତି । ଯଥା—

(ସଂସ୍କୃତ) ବୃଦ୍ଧି>(ପ୍ରାକୃତ) ବଡ୍ଢ> ଓଡ଼ିଆ) ବଡ଼
,, ମୃତ୍ତିକା>(ଓଡ଼ିଆ) ମାଟି

୮—ସ୍ୱତଃ-ମୂର୍ଦ୍ଧନ୍ୟୀକରଣ (Spontanious Cerebralisation)—ଯେତେବେଳେ ଦନ୍ତ୍ୟବର୍ଣ୍ଣ ତ୍, ର, ସ ପ୍ରଭୃତି ମୂର୍ଦ୍ଧନ୍ୟ ବର୍ଣ୍ଣରେ ପରିଣତ ହୁଏ ତାହାକୁ ସ୍ୱତଃ-ମୂର୍ଦ୍ଧନ୍ୟୀକରଣ କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ—

(ସଂ) ପତନ୍ତି>ପଡ଼ଇ>ପଡ଼େ
ଲତା>ଲଠା
ତଗର>ଟଗର ଇତ୍ୟାଦି

୯—ନାସିକ୍ୟୀକରଣ (Nasalisation) ଅନୁନାସିକ ବା ବ୍ୟଞ୍ଜନ ଧ୍ୱନିର ଲୋପ ହେଲେ ପୂର୍ବବର୍ତ୍ତୀ ସ୍ୱରଧ୍ୱନି ଅନୁନାସିକ ହୋଇଥାଏ । ଏହାକୁ ନାସିକ୍ୟୀକରଣ କୁହାଯାଏ । ଉଦାହରଣ ହେଲା—

(ସଂସ୍କୃତ) ଚନ୍ଦ୍ର>(ପାଳି) ଚନ୍ଦ>(ବଙ୍ଗଳା) ଚାନ୍ଦ୍
,, ଭ୍ରମର>(ଓଡ଼ିଆ) ଭଅଁର
ଧୂମ>ଧୂଆଁ, ଆମିଷ>ଆଇଁଷ, କୁମାର>କୁଆଁର

୧୦-ସ୍ୱତଃ-ନାସିକରଣ (Spontanious Nasalisation) ବର୍ଣ୍ଣର ସ୍ପର୍ଶ ବ୍ୟତୀତ ସ୍ୱରଧ୍ୱନି ଆପେ ଆପେ ଅନୁନାସିକ ହୋଇ-ଗଲେ ଏହାକୁ ସ୍ୱତଃ-ନାସିକରଣ କହନ୍ତି । ଦୃଷ୍ଟାନ୍ତ—

(ସଂ) ପୁଥି>(ବଙ୍ଗଳା) ପୁଁଥି
,, ହସି> ,, ହାଁସି

୧୧—ଆଦ୍ୟସ୍ୱରାଗମ (Prothesis)—ପଦର ଆଦ୍ୟରେ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣଥିଲେ ଉଚ୍ଚାରଣ କରିବାରେ କାଠିନ୍ୟ ଉପସ୍ଥିତ ହୁଏ । ସେଥିନିମିତ୍ତ ସଂଯୁକ୍ତ (ବ୍ୟଞ୍ଜନ) ବର୍ଣ୍ଣର ପୂର୍ବରେ ସମସ୍ତ ସମୟରେ ସ୍ୱରବର୍ଣ୍ଣର ଆଗମ ହୋଇଥାଏ । ତାହାକୁ ଆଦ୍ୟ ସ୍ୱରାଗମ କୁହନ୍ତି ।

(ସଂସ୍କୃତ) ସ୍ତ୍ରୀ>(ପାଳି) ଇସ୍ତ୍ରୀ>(ଓଡ଼ିଆ) ଇସ୍ତ୍ରୀ
(ଇଂରାଜୀ) ଷ୍ଟେସନ>(ଓଡ଼ିଆ, ବଙ୍ଗଳା) ଇଷ୍ଟେସନ
,, ସ୍କୁଲ>( ,, ) ଇସ୍କୁଲ
,, ସ୍ପେଶାଲ>( ,, ) ଇସ୍ପେଶାଲ

୧୨—ସ୍ୱରଭକ୍ତି Anaptilysis) :—ଯୁକ୍ତ ବ୍ୟଞ୍ଜନର ଦୁଇଟି ଧ୍ୱନିର ଉଚ୍ଚାରଣ ପ୍ରୟାସ ଲଘବ କରିବା ପାଇଁ ଦୁଇ ଯୁକ୍ତ ବ୍ୟଞ୍ଜନ ମଧ୍ୟରେ ଗୋଟିଏ ସ୍ୱର ଧ୍ୱନିର ଆଗମ ହେଲେ ସ୍ୱରଭକ୍ତି ହୁଏ । ଯଥା—

(ସଂସ୍କୃତ) କ୍ଲେଶ> (ଓଡ଼ିଆ) କଲେଶ
,, ଧାର୍ଯ୍ୟ> ,, ଧାରିଜ
,, ଦ୍ୱାର> ,, ଦୁଆର
,, ମୁକ୍ତା> ,, ମୁକୁତା

୧୩—ଅପିହିତ (Epenthesis) :—ପଦ ମଧ୍ୟରେ ବା ପଦାନ୍ତରେ 'ଇ' କାର, 'ଉ' କାର ଥିଲେ ତାହାଁର ପରିବର୍ତ୍ତନ ହୋଇ ସେହି 'ଇ', 'ଉ' କାର ନିଜ ନିଜ ସ୍ଥାନରେ ରହନ୍ତି । ପୂର୍ବବର୍ତ୍ତୀ ବ୍ୟଞ୍ଜନ ଧ୍ୱନିରେ ସେହି 'ଇ', 'ଉ'ର ଆଧିକ୍ୟ ଉଚ୍ଚାରଣ ହେଲେ ତାହାକୁ ଅପିନିହିତ କୁହାଯାଏ । ଯଥା—

(ସଂସ୍କୃତ) ଭବତି> (ଆବେସ୍ତା) ବଭତି
,, ମୂର୍ତ୍ତି> (ଓଡ଼ିଆ) ମୁରତି
,, କୀର୍ତ୍ତି> ( ,, ) କିରତି

୧୪—ସ୍ୱରସଙ୍ଗତି (Vowel Harmony) :—କୌଣସି ସ୍ୱର ଧ୍ୱନିର ପ୍ରଭାବରେ ପୂର୍ବ ବା ପରର ପରିବର୍ତ୍ତନ ହେଲେ କିମ୍ବା ଏକ ସ୍ୱର ଧ୍ୱନି ଅନ୍ୟ ଏକ ସ୍ୱର ଧ୍ୱନିକୁ ପ୍ରଭାବିତ କଲେ ତାହାକୁ ସ୍ୱରସଙ୍ଗତି କୁହାଯାଏ । ଦୃଷ୍ଟାନ୍ତ ହେଲା—

(ସଂସ୍କୃତ) ଦେଶୀ> (ବଙ୍ଗଳା) ଦିଶୀ
,, ପୁରାନା> ,, ପୁରୁନା
,, ନେଲ୍ଲ> ,, ନିଲ

୧୫—ଜୋଡ଼କଲମ (Portmanteau)—ଯେତେବେଳେ ଦୁଇଟି ସ୍ୱତନ୍ତ୍ର ଶବ୍ଦର ଅଂଶ ଏକତ୍ରିତ ହୋଇ ଗୋଟିଏ ଶବ୍ଦରେ

ପରିଣତ ହୁଏ ସେତେବେଳେ ତାହା ଜୋର କଲମ ହୁଏ । ଦୃଷ୍ଟାନ୍ତ ସ୍ୱରୂପ—

Cameleopard=Camel+Leopard

୧୬—ସମାକ୍ଷର ଲୋପ (Haplology)—ଏକ ପଦରେ ପାଖାପାଖି ସମଧ୍ୱନ୍ୟାତ୍ମକ ଦୁଇଟି ଅକ୍ଷର ଲୋପ ହେଲେ ସମାକ୍ଷର ଲୋପ ହୁଏ । ଯଥା—

(ସଂସ୍କୃତ) ଭ୍ରାତୃଜାୟା>(ପାଲି-ପ୍ରାକୃତ)
ଭାଉଯାଆ>(ଓଡ଼ିଆ) ଭାଉଜ
,, ଅର୍ଦ୍ଧତୃତୀୟ> ,,
ଅଡ଼ତଈୟ> ,, ଅଡ଼ାଇ
,, ଆତପସିଦ୍ଧଧାନ୍ୟାତ ତଣ୍ଡୁଲ>(ବଙ୍ଗଳା) ଆତପଚୁଲ
,, ବା ପା>(ପାଲି) ବା ଆ>(ଓଡ଼ିଆ) ବା

୧୭—ଧ୍ୱନି ପୂରଣ (Compensation)—ଶବ୍ଦ ପରି-ବର୍ତ୍ତନ ସମୟରେ ଅନ୍ତ୍ୟବ୍ୟଞ୍ଜନ ବର୍ଣ୍ଣର ଦ୍ୱିତ୍ୱ ହୋଇ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ ଲୋପ ପାଏ ଓ ତାର ଅଭାବ ପୂରଣ ନିମିତ୍ତ ଆଦ୍ୟ ବ୍ୟଞ୍ଜନ ଆକାରାନ୍ତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ—

(ସଂସ୍କୃତ) ଅଦ୍ୟ>(ପ୍ରାକୃତ) ଅଜ୍ଜ>(ଓଡ଼ିଆ) ଆଜ
,, ମତ୍ସ୍ୟ> ,, ମଚ୍ଛ> ,, ମାଛ
,, କର୍ମ> ,, କମ୍ମ> ,, କାମ

୧୮—ଅପଶ୍ରୁତି (Umlant)—ଶବ୍ଦରେ 'ଇ'ର ଅଗ୍ର ଉଚ୍ଚାରଣକୁ ଅପଶ୍ରୁତି କୁହାଯାଏ । ଯଥା—

(ସଂ) କାଞ୍ଚ>(ବଙ୍ଗଳା) କାଇଞ୍ଚ
,, ଯାଚ୍ଞା> ,, ଯାଇଚ୍ଞା

୧୯—'ର' କାର ଭବନ ( Rhotacism )—'ର'କାର ଭବନରେ ଧ୍ୱନିର ପରିବର୍ତ୍ତନ ସମୟରେ 'S' ବା 'Z' ରେ ପରିଣତ ହୋଇପାରେ 'R' ରେ ପରିଣତ ହୁଏ । ଯଥା—

(ଭାରତ ୟୁରୋପୀୟ) ଦୁସ୍‌ମେନସ୍ > (ଭାରତୀୟ-ଇରାନୀୟ) ଦୁଜମାନସ

(ସଂସ୍କୃତ) ଦୁର୍ମନଃ

୨୦—ବର୍ଣ୍ଣବିପ୍ରକର୍ଷ (Anaptyxis)—ସଂଯୁକ୍ତ ବର୍ଣ୍ଣର ଉଚ୍ଚାରଣରେ କ୍ଳିଷ୍ଟତା ଦୁରୀଭୂତ ପାଇଁ ସ୍ୱର ବର୍ଣ୍ଣର ଆଗମ ହୁଏ । ଏହା ସଂଯୁକ୍ତ ବର୍ଣ୍ଣକୁ ଭିନ୍ନ ଭିନ୍ନ କରିଥାଏ । ଅନେକ ସମୟରେ ଛନ୍ଦର ଅନୁରୋଧରେ ଏହା ମଧ୍ୟ ହୋଇଥାଏ । ସଂଯୁକ୍ତ ବର୍ଣ୍ଣର ଯେଉଁ ସ୍ୱର ଥାଏ ସେହି ସ୍ୱର ଦୁଇ ବର୍ଣ୍ଣରେ ଯୋଗ ହୁଏ । ଏହାକୁ ବର୍ଣ୍ଣ ବିପ୍ରକର୍ଷ କହନ୍ତି । ଯଥା—

ଜନ୍ମ > ଜନମ, ଶୁକ୍ଳ > ଶୁକଲ, ଚକ୍ର > ଚକର
ରତ୍ନ > ରତନ, କର୍ମ > କରମ, ରକ୍ତ > ରକତ

୨୧—ତାଲବ୍ୟକରଣ (Palatalization)—ତାଲବ୍ୟ ବ୍ୟଞ୍ଜନ ଧ୍ୱନିର ସଂସ୍ପର୍ଶରୁ ଦନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣ ତାଲବ୍ୟ ବର୍ଣ୍ଣରେ ପରିଣତ ହେଲେ ତାହାକୁ ତାଲବ୍ୟଭାବ କୁହାଯାଏ । ଦୃଷ୍ଟାନ୍ତ—

(ସଂ) ବାଦ୍ୟ > (ଓ) ବାଜା ମଧ୍ୟମ > ମଝିଆ, ଯୁଧ୍ୟତି > ଯୁଝଇ

୨୨—ସ୍ୱତଃ-ତାଲବ୍ୟଭାବ— ( Spontanious Palatalizatsion)—ତାଲବ୍ୟ ବର୍ଣ୍ଣର ସଂସ୍ପର୍ଶ ବ୍ୟତୀତ ଦନ୍ତ୍ୟବର୍ଣ୍ଣ ତାଲବ୍ୟ ବର୍ଣ୍ଣରେ ପରିଣତ ହେଲେ ସ୍ୱତଃ ତାଲବ୍ୟଭାବ ହୁଏ, ଯଥା – ସିଦ୍ଧ > ସିଝା, ଧୂନକ > ଝୁଣା ଇତ୍ୟାଦି ।

୨୩—ଲୌକିକନିରୁକ୍ତ ( Folk-Etymology )—ଯେଉଁ ନିରୁକ୍ତ ବୈଜ୍ଞାନିକ ବା ଭାଷାତାତ୍ତ୍ୱିକ ନିୟମ ଉପରେ ନିର୍ଭର ନକରି ସାଧାରଣ ଜନତା ଦ୍ୱାରା ନିର୍ଦ୍ଧାରିତ ବା ସ୍ଥିରକୃତ ହୁଏ ତାହାକୁ ଲୌକିକ ନିରୁକ୍ତ କୁହାଯାଏ । ଯଥା—

(ସଂ) ଊର୍ଣ୍ଣନବାଭ> (ଓ) ଊର୍ଣ୍ଣନାଭ
(ଇଂ) ଆର୍ମଚେୟାର୍> (ଓ) ଆରାମ ଚେୟାର
,, ହସପିଟାଲ୍> ,, ହାସପାତାଲ

ଉପରୋକ୍ତ କାରଣରୁ ଧ୍ୱନିର ପରିବର୍ତ୍ତନ ହୋଇଥାଏ । ଏହାଦ୍ୱାରା ଭାଷା ଯେ ସମୃଦ୍ଧ ହୁଏ କହିବା ନିରର୍ଥକ ।

## ଅର୍ଥତତ୍ତ୍ୱ (Semantic)

ଶବ୍ଦର ଅର୍ଥ କାହିଁକି ଓ କିପରି ପରିବର୍ତ୍ତିତ ହେଉଛି, ତାହା ଯାହା ସାହାଯ୍ୟରେ ଜଣାଯାଏ ତାକୁ ଶବ୍ଦାର୍ଥ ତତ୍ତ୍ୱ କୁହାଯାଏ । ଅନ୍ୟ ଭାଷାରୁ ଗୃହୀତ ଶବ୍ଦ କାଳକ୍ରମେ ବିକୃତ ଲାଭକରି ଏକ ସ୍ୱତନ୍ତ୍ର ଅର୍ଥ ପ୍ରକାଶ କରେ । ଏହା ମୂଳ ଶବ୍ଦଠାରୁ ସମ୍ପୂର୍ଣ୍ଣ ପୃଥକ ହୋଇଯାଏ । ଭାଷାବିତ୍‌ମାନଙ୍କ ମତରେ ପୃଥିବୀର ପ୍ରତ୍ୟେକ ଭାଷାର ଅର୍ଥବିକୃତି ମୁଖ୍ୟତଃ ସାତଟି ଉପାୟରେ ହୋଇଥାଏ; ଯଥା—ଅର୍ଥର ସମ୍ପ୍ରସାରଣ, ସଙ୍କୋଚନ, ଆଲଙ୍କାରିକ ପ୍ରୟୋଗ, ଅର୍ଥର ଉନ୍ନୟନ, ଅର୍ଥର ଅବନମନ, ବକ୍ତାର କଥନର ଭଙ୍ଗୀ ଓ ଧର୍ମଗତ ପ୍ରଭାବ ।

୧—ଅର୍ଥର ସମ୍ପ୍ରସାରଣ :—ଯେଉଁ ଶବ୍ଦ ପୂର୍ବେ ଏକ ଅର୍ଥରେ ବ୍ୟବହୃତ ହେଉଥିଲା ତାହା ବର୍ତ୍ତମାନ ଏକାଧିକ

ଅର୍ଥରେ ପ୍ରୟୋଗହେଲେ ଅର୍ଥର ସମ୍ପ୍ରସାରଣ ହୋଇଛି ବୋଲି ଧରାଯାଏ । ଯଥା—'ମୃଗୟା' ଶବ୍ଦ ପୂର୍ବେ କେବଳ ମୃଗବଧକୁ ବୁଝାଉଥିଲା; କିନ୍ତୁ ବର୍ତ୍ତମାନ ଏହା ସମସ୍ତ ପ୍ରକାର ଶିକାରକୁ ବୁଝାଏ । ସଂଖ୍ୟାବାଚକ ଶବ୍ଦ 'ବାର' ବର୍ତ୍ତମାନ ବିଭିନ୍ନ ଅର୍ଥରେ ବ୍ୟବହୃତ ହେଉଛି; ଯଥା –ବାରଦୁଆର, ବାରବ୍ରିନସ୍ତା, ବାର-ବାଜଲଣି ଇତ୍ୟାଦି ।

୨—ଅର୍ଥର ସଙ୍କୋଚନ :—ପୂର୍ବେ ଯେଉଁ ଶବ୍ଦ ବ୍ୟାପକ ଅର୍ଥରେ ବ୍ୟବହୃତ ହେଉଥିଲା, ତାହା ବର୍ତ୍ତମାନ ଏକ ଅର୍ଥର ସୂଚନା ଦେଲେ ଅର୍ଥର ସଙ୍କୋଚନ ଘଟିଥାଏ । ଦୃଷ୍ଟାନ୍ତ ସ୍ୱରୂପ—'ବିଲାତ' ଶବ୍ଦ ପୂର୍ବେ ବିଦେଶ ଅର୍ଥ ପ୍ରକାଶ କରୁଥିବା ସ୍ଥଳେ ଆଜି ଏକମାତ୍ର ଇଂଲଣ୍ଡ ଦେଶକୁହିଁ ଲକ୍ଷ୍ୟ କରୁଛି । ଏଠାରେ 'ବିଲାତ'ର ବିସ୍ତୃତ ପରିସର ସଂକୀର୍ଣ୍ଣ ଭାବରେ ରୂପାୟିତ ।

୩—ଅର୍ଥର ଆଲଙ୍କାରିକ ପ୍ରୟୋଗ :—ସାଧାରଣ ଶବ୍ଦକୁ ରୂପକ ଭାବରେ ପ୍ରୟୋଗ କଲେ ଏକ ବିଶେଷ ଅର୍ଥ ପ୍ରକଟିତ ହୁଏ । ଶବ୍ଦ ଯୋଜନାର ବାହ୍ୟ ଅର୍ଥର ଅନ୍ତରାଳରେ ଉଦ୍ଦେଶ୍ୟର ପ୍ରକୃତ ଅର୍ଥ ନିହିତ । ଏହି ଆଲଙ୍କାରିକ ଉଦାହରଣକୁ ଏକ ସାଙ୍କେତିକ ଭାଷା କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ-'ତାର ଅନ୍ତିଆଣ ବିହିଲଣି' କହିଲେ ଜଣେ ବ୍ୟକ୍ତିର ମୃତ୍ୟୁ ସମୟର ସୂଚନା ଦିଏ । 'ଜୀବନଟା ପାଣି ଫୋଟକା' କହିଲେ ମାନବର କ୍ଷଣ ସ୍ଥାୟୀତ୍ୱର ପରିଚୟ ଦିଏ ।

୪ –ଅର୍ଥର ଉନ୍ନୟନ :—ଅନେକ ସ୍ଥଳରେ ଶବ୍ଦର ଅର୍ଥ ପ୍ରକାଶରେ ଉନ୍ନତି ପରିଲକ୍ଷିତ ହୁଏ । ଅର୍ଥାତ, ପୂର୍ବେ ଯେଉଁ ଶବ୍ଦ ମନ୍ଦ ଅର୍ଥରେ ବ୍ୟବହୃତ ହେଉଥିଲା ବର୍ତ୍ତମାନ ତାହା ଭଲ ଅର୍ଥରେ ପ୍ରୟୋଗ କରାଯାଏ;—ଯଥା 'କ୍ଷଣ' ଶବ୍ଦଟି ପୂର୍ବେ

ନପୁଂସକ ଅର୍ଥରେ ଗାଳି ରୂପରେ ବ୍ୟବହୃତ ହେଉଥିଲା । କିନ୍ତୁ ଆଜି ତାହା ହୃଷ୍ଟପୁଷ୍ଟ ଅର୍ଥରେ ଚଳୁଛି ।

୫—ଅର୍ଥର ଅବନମନ :—ପୂର୍ବରୁ ଯାହା ଭଲ ଅର୍ଥରେ ବ୍ୟବହାର କରାଯାଉଥିଲା କ୍ରମେ ତାହା ମନ୍ଦ ଅର୍ଥରେ ବ୍ୟବହାର ହେଲେ ଅର୍ଥର ଅବନମନ ହୁଏ । ଆରବୀ ଭାଷାରେ 'ଫାଜିଲ' ଶବ୍ଦର ଅର୍ଥ 'ବିଦ୍ୱାନ' । ମାତ୍ର ଓଡ଼ିଆରେ ଏହାର ଅର୍ଥ ଦୁଷ୍ଟ ବା ଅକୃତଜ୍ଞ । ସଂସ୍କୃତ 'ଇତର' ଶବ୍ଦର ଅର୍ଥ ଅନ୍ୟ ବା ଅପର; କିନ୍ତୁ ଓଡ଼ିଆରେ ଏହା 'ନୀଚ' ଅର୍ଥରେ ବ୍ୟବହୃତ ହେଉଅଛି । ଏହା ଦ୍ୱାରା ଶବ୍ଦ ଅର୍ଥର ଅବନମନ ହୋଇଅଛି ।

୬—ବକ୍ତାର କଥନ ଭଙ୍ଗୀ—ବକ୍ତାର କଥନ ଭଙ୍ଗୀ ଦ୍ୱାରା ଶବ୍ଦ ଅର୍ଥର ପରିବର୍ତ୍ତନ ହୋଇଥାଏ । କଥନର ଉଦ୍ଦେଶ୍ୟ ଅନୁଯାୟୀ ଗୋଟିଏ ବାକ୍ୟ ପ୍ରଶ୍ନ ବିସ୍ମୟ, ଆନନ୍ଦ, ଈର୍ଷା ସୂଚକ ଭେଦରେ ଭିନ୍ନ ଅର୍ଥ ପ୍ରକାଶ କରିଥାଏ । ଶବ୍ଦ ଉପରେ ଗୁରୁତ୍ୱ ଆରୋପଣ କରି ଏଥିରେ ଭିନ୍ନତା ଆସିଥାଏ । କର୍ମକ୍ଷେତ୍ରରେ 'ଘଣ୍ଟା ବାଜିଲାଣି' କହିଲେ ଗୃହ ଆଗମନର ସୂଚନା ଦିଏ । ମାତ୍ର, ସାମାନ୍ୟ ସ୍ୱର ବଦଳାଇ ଏହାର ଉଚ୍ଚାରଣ କଲେ ପ୍ରଶ୍ନ-ବାଚକ, ଆଗ୍ରହ, ଆନନ୍ଦ ବା କ୍ଲାନ୍ତିର ଇଙ୍ଗିତ ଦିଏ ।

୭—ଧର୍ମମତ :—ଶବ୍ଦର ଅର୍ଥ ବିକୃତିରେ ଏହା ଏକ ଗୌଣ କାରଣ ଭାବେ ଗ୍ରହଣ ଯୋଗ୍ୟ । ଧର୍ମର ପ୍ରଭାବରେ ଗୋଟିଏ ଶବ୍ଦ ତାର ପ୍ରକୃତ ଅର୍ଥରୁ ବିଚ୍ୟୁତ ହୋଇ ଅନ୍ୟ ଅର୍ଥରେ ରୂପାନ୍ତରିତ ହୁଏ । ଯଥା—'ସେ ଆଲ୍ଲା ଭଜିଲାଣି' କହିଲେ ସାଧାରଣତଃ ଜଣାଯାଏ ଯେ କୌଣସି ମୁସଲମାନ ବ୍ୟକ୍ତି ସ୍ୱଧର୍ମର ଉପାସନା କରୁଅଛି । କିନ୍ତୁ ଅନ୍ୟ ଅର୍ଥରେ, କୌଣସି

ଏକବାକ୍ୟ ଧର୍ମାନ୍ତର ହୋଇ ଇସ୍‌ଲାମଧର୍ମ ଗ୍ରହଣ କରିଛି କିମ୍ବା କୌଣସି ଏକ ଦ୍ବୀପର ବିପଦ ପଡ଼ିଛି ।

ପ୍ରତିଦିନ ଶବ୍ଦର ଅର୍ଥ ପରିବର୍ତ୍ତନ ହେଉଛି । ଏହାଦ୍ୱାରା ମୂଳଶବ୍ଦ ବିକୃତ ହେଉଛି ଏବଂ ବିଭିନ୍ନଭାଷାର ମୂଳଶବ୍ଦ ବିକୃତ ହୋଇ ପରସ୍ପର ଦେଶର ଭାଷାକୁ ସମୃଦ୍ଧ କରୁଛି । ଶବ୍ଦର ଅର୍ଥ ପରିବର୍ତ୍ତନ ଯୋଗୁଁ ଭାଷା ଉନ୍ନତ, ଶୁଦ୍ଧ ଓ ମାର୍ଜିତ ହୋଇ ପାରୁଛି ।

## ଭାଷାତତ୍ତ୍ୱ ଆଲୋଚନାର କେତୋଟି ଦିଗ

ଭାଷାତତ୍ତ୍ୱ ବିବିଧ ଉପାୟରେ ଆଲୋଚନା କରାଯାଇ ଥାଏ, ଯଥା—ଐତିହାସିକ ଆଲୋଚନା, ବର୍ଣ୍ଣନାତ୍ମକ ଆଲୋଚନା ଓ ତୁଳନାତ୍ମକ ଆଲୋଚନା ।

ସମୟ ପ୍ରବାହର ପ୍ରତିଲୋମ ଗତିରେ କୌଣସି ଗୋଟିଏ ଭାଷା ଗୋଷ୍ଠୀର ଭାଷାତାତ୍ତ୍ୱିକ ପରିବର୍ତ୍ତନ ଓ ସଂଶୋଧନର ବୈଜ୍ଞାନିକ ଅଧ୍ୟୟନହିଁ ହେଉଛି ସେହି ଭାଷା ଓ ଭାଷାଗୋଷ୍ଠୀର ଐତିହାସିକ ଆଲୋଚନା ।

ବିଭିନ୍ନ ପ୍ରାଦେଶିକ ବା ଦେଶର ଭାଷାଗତ ସାମ୍ୟ ଓ ପାର୍ଥକ୍ୟ ଭେଦରେ ସେଗୁଡ଼ିକର ଉତ୍ପତ୍ତି ନିର୍ଣ୍ଣୟ କରିବା ଏବଂ ଶବ୍ଦର ତାତ୍ପର୍ଯ୍ୟ ନିରୂପଣ କରିବା ତୁଳନାତ୍ମକ ଭାଷାତତ୍ତ୍ୱର ଆଲୋଚନା ଦ୍ୱାରା ସମ୍ଭବ ହୋଇଥାଏ ।

ଗୋଟିଏ ଭାଷାରେ ଧ୍ୱନିର ପରିବର୍ତ୍ତନ, ଅର୍ଥର ବିକୃତି, ବାକ୍ୟରେ ଶବ୍ଦ ଗଠନର ନିୟମ ଓ ଶରୀରରେ ବିଭିନ୍ନ ଧ୍ୱନିସୃଷ୍ଟିର କାରଣ ପ୍ରଭୃତି ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ଆଲୋଚ୍ୟ ବସ୍ତୁ ।

———

## ଓଡ଼ିଆ ଧ୍ୱନିତତ୍ତ୍ୱ

ଓଡ଼ିଆ ଭାଷାର ସମସ୍ତ ଧ୍ୱନି ସଂସ୍କୃତରୁ ଆସିଛି । ତେଣୁ ଏହାର ଧ୍ୱନି ସଂସ୍କୃତ ସହିତ ସମାନ । ଓଡ଼ିଆ ଧ୍ୱନିକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ,—ଯଥା—୧ ସ୍ୱର ଧ୍ୱନି ଓ ୨—ବ୍ୟଞ୍ଜନ ଧ୍ୱନି ।

**ସ୍ୱରଧ୍ୱନି**—ଯେଉଁ ଧ୍ୱନିଗୁଡ଼ିକର ଉଚ୍ଚାରଣରେ ନିର୍ଗତ ଶ୍ୱାସରେ କେଉଁଠି ଅବରୁଦ୍ଧତା ନଥାଏ ବା ନରୁଦ୍ଧେ ତାକୁ ସ୍ୱର ଧ୍ୱନି କୁହାଯାଏ । ଓଡ଼ିଆରେ ସ୍ୱର ଧ୍ୱନିର ସଂଖ୍ୟା ଏଗାର; ଯଥା—ଅ, ଆ, ଇ, ଈ, ଉ, ଊ, ଋ, ଏ, ଐ, ଓ, ଔ । 'ଐ' ଓ 'ଔ' ଦ୍ୱିସ୍ୱର ଧ୍ୱନି (dip_ithone) । କାରଣ, ଐ= ଅ+ଇ ଏବଂ ଔ=ଅ+ଉ ର ସମଷ୍ଟିରେ ସୃଷ୍ଟ । ଅବଶିଷ୍ଟ 'ଋ' ଟି ସ୍ୱରଧ୍ୱନିର ମୂଲ୍ୟ ନାହିଁ । କାରଣ ଏହା 'ରି' ହିସ୍ୱିତ ସମାନ । ଅବଶିଷ୍ଟ ଆଠଟିରୁ 'ଈ" ଓ 'ଊ' କୁ ବାଦ ଦେବାକୁ ପଡ଼ିବ । କାରଣ ଏ ଦୁଇଟି ଦୀର୍ଘସ୍ୱରବର୍ଣ୍ଣର ଅନ୍ତର୍ଗତ । ମୋଟ ଉପରେ ଓଡ଼ିଆରେ ସ୍ୱର ଧ୍ୱନି ବା Ca dinal vowel ର ସଂଖ୍ୟା ୬ଟି, ଯଥା— ଅ, ଆ, ଇ, ଉ, ଓ, ଏ ।

ଧ୍ୱନିକୁ ଉଚ୍ଚାରଣ ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା-୧—ଅଗ୍ରସ୍ୱର, ୨—ପଶ୍ଚାତସ୍ୱର ।

ଅଗ୍ରସ୍ୱର—ମୁଖର ଅଗ୍ରଭାଗରେ ଉଚ୍ଚାରିତ ହେଉଥିବା ସ୍ୱରଧ୍ୱନିକୁ ଅଗ୍ରସ୍ୱର କୁହାଯାଏ । ଉଦାହରଣ ସ୍ୱରୂପ—ଇ, ଏ ଏହି ଶ୍ରେଣୀର ଅନ୍ତର୍ଗତ ।

ପଶ୍ଚାତ୍‌ସ୍ୱର—ଯେଉଁ ସ୍ୱରଧ୍ୱନି ମୁଖର ପଶ୍ଚାତ ଭାଗରେ ଉଚ୍ଚାରିତ ହୁଅନ୍ତି ସେଗୁଡ଼ିକୁ ପଶ୍ଚାତସ୍ୱର କୁହାଯାଏ । ଯଥା—'ଉ' ଓ 'ଅ' ଏହି ଶ୍ରେଣୀର ଏତଦ୍ ବ୍ୟତୀତ ଅନ୍ୟ ଏକ ସ୍ୱରଧ୍ୱନି ଦେଖାଯାଏ ଯାହାକୁ ମଧ୍ୟବର୍ତ୍ତୀ ସ୍ୱର କୁହାଯାଏ ।

ମଧ୍ୟବର୍ତ୍ତୀସ୍ୱର—ଯେଉଁ ସ୍ୱରଧ୍ୱନି ମୁଖର ଅଗ୍ର ବା ପଶ୍ଚାତ ଭାଗରେ ଉଚ୍ଚାରିତ ନହୋଇ ମଧ୍ୟ ଭାଗରେ ଉଚ୍ଚାରିତ ହୁଏ ତାକୁ ମଧ୍ୟବର୍ତ୍ତୀସ୍ୱର କୁହାଯାଏ । କେବଳ 'ଆ' ଏହି ଶ୍ରେଣୀର ଅନ୍ତର୍ଗତ ।

ଉଚ୍ଚାରଣ ସମୟରେ ମୁଖର ଅବସ୍ଥା ଅନୁଯାୟୀ ସ୍ୱରଧ୍ୱନି ଦୁଇ ପ୍ରକାରର, ଯଥା —Openvowel ଖୋଲାସ୍ୱର; ୨—Colse vowel ବା ବନ୍ଦସ୍ୱର ।

Open vowel—ଯେଉଁ ସ୍ୱର ଉଚ୍ଚାରଣ କଲାବେଳେ ମୁଖ କ୍ରମଶଃ ଖୋଲାହୁଏ ତାକୁ Open vowel କୁହାଯାଏ । 'ଅ' ଏହି ଶ୍ରେଣୀର ସ୍ୱରଲିପି ।

Close lowel—ଯେଉଁ ସ୍ୱରଧ୍ୱନି ଉଚ୍ଚାରଣ ସମୟରେ ମୁଖବନ୍ଦ ହୋଇ ଯାଏ ତାକୁ Close vowel କୁହନ୍ତି । 'ଇ ଏହି ଶ୍ରେଣୀର ଅନ୍ତର୍ଗତ ।

ସମୟ ସମୟରେ ଦ୍ରୁତ ଉଚ୍ଚାରଣ କରୁ କରୁ ଦ୍ୱିସ୍ୱର ଧ୍ୱନିର ମିଳନ ହୁଏ; ଉଦାହରଣ—'ନେଉଆ"

Spread vowel—ଇ, ଏ, ଅ

Round vowel—ଉ, ଅ, ଓ

# CHART

| | ଅଗ୍ର | ମଧ୍ୟ | ପଶ୍ଚାତ |
|---|---|---|---|
| ସଂବୃତ ବାଚକ | ଇ | — | ଉ |
| ଅର୍ଦ୍ଧ ସଂବୃତ ବା ମଧ୍ୟ | ଏ | — | ଓ |
| ଅର୍ଦ୍ଧ ବିବୃତ | — | — | ଅ |
| ବିବୃତ ବା ନିମ୍ନ | — | ଆ | — |

**ବ୍ୟଞ୍ଜନ ଧ୍ୱନି—**

ଯେଉଁ ଧ୍ୱନିମାନଙ୍କ ଉଚ୍ଚାରଣରେ ନିର୍ଗତ ଶ୍ୱାସର ଅବରୁଦ୍ଧତା ହୁଏ ସେଗୁଡ଼ିକୁ ବ୍ୟଞ୍ଜନ ଧ୍ୱନି କୁହାଯାଏ । ବ୍ୟଞ୍ଜନ ଧ୍ୱନିକୁ ଚାରି ଭାଗରେ ବିଭକ୍ତ କରାଯାଏ । ଯଥା—ଅଘୋଷ, ସଘୋଷ, ଅଳ୍ପପ୍ରାଣ ଓ ମହାପ୍ରାଣ । ଅଘୋଷ —ଯେଉଁ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ସ୍ୱରତନ୍ତ୍ରୀର କମ୍ପନ ହୁଏନାହିଁ, ସେଗୁଡ଼ିକ ଅଘୋଷ ବ୍ୟଞ୍ଜନ ଧ୍ୱନି କୁହାଯାଏ । ପ୍ରତ୍ୟେକ ବର୍ଗର ପ୍ରଥମ ଦୁଇଟି ଅକ୍ଷର ଏବଂ 'ସ' ହେଉଛି ଅଘୋଷ ।

ସଘୋଷ—ଯେଉଁ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ସ୍ୱରତନ୍ତ୍ରୀର କମ୍ପନହୁଏ ସେଗୁଡ଼ିକୁ ସଘୋଷ ବ୍ୟଞ୍ଜନ ଧ୍ୱନି କୁହାଯାଏ । ପ୍ରତ୍ୟେକ ବର୍ଗର ଶେଷ ତିନୋଟି ଅକ୍ଷର, ଯ୍, ର ଲ, ବ ଓ ସ୍ୱରଧ୍ୱନି ସମୂହ ସଘୋଷ ଅଟନ୍ତି ।

ଅଳ୍ପପ୍ରାଣ—ପ୍ରତ୍ୟେକ ବର୍ଗର ପ୍ରଥମ ଓ ତୃତୀୟ ବର୍ଣ୍ଣ ଅଳ୍ପପ୍ରାଣ, ଯଥା—'କ' ବର୍ଗର 'କ' ଓ 'ଗ' ଅଳ୍ପପ୍ରାଣ ବା Aspirate

ମହାପ୍ରାଣ—ପ୍ରତ୍ୟେକ ବର୍ଗର ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣ ମହାପ୍ରାଣ ବା Non-aspirate, ଯଥା—'କ' ବର୍ଗର 'ଖ' ଓ 'ଘ' ହେଉଛି ଏହି ଶ୍ରେଣୀର ।

କଣ୍ଠ୍ୟ ( velar )—'କ' ବର୍ଗ । ତାଲବ୍ୟ ( Palatal )— 'ଚ' ବର୍ଗ; ଏହାକୁ ସଘର୍ଷିକା ( Africates ) ମଧ୍ୟ କୁହାଯାଏ । ମୂର୍ଦ୍ଧଣ୍ୟ (Cerebral)—'ଟ' ବର୍ଗ । ଦନ୍ତମୂଳୀୟ (Alveolar)— 'ତ'ବର୍ଗ ; କିନ୍ତୁ ଅନ୍ୟ ବର୍ଗହେଲେ ଦନ୍ତ୍ୟବର୍ଣ୍ଣ ବା Dental ହେବ । ଦ୍ୱୈଓଷ୍ଠ୍ୟବର୍ଣ୍ଣ ( Bilebial ) । 'ପ'ବର୍ଗ-'ୟ'—ଅର୍ଦ୍ଧସ୍ୱର ବା Semivowel । 'ର' କମ୍ପିତ ବା Trilled ବର୍ଣ୍ଣ । 'ଳ'— ତାଡ଼ିତ ବା Flapped 'ସ' ଉଷ୍ମଧ୍ୱନି ବା Sibilant । 'ହ' ମଧ୍ୟ Sibilant ବା ଉଷ୍ମଧ୍ୱନି ଅଟେ । କାରଣ ଏଥିରେ 'ମହାପ୍ରାଣ' ଅଶ୍ରୁତ 'ଅ' ହୋଇଛି ।

## CHART

| | ଦ୍ୱୟୋଷ୍ଠ୍ୟ | ଦନ୍ତମୂଳୀୟ | ମୂର୍ଦ୍ଧଣ୍ୟ | ତାଲବ୍ୟ | କଣ୍ଠ୍ୟ |
|---|---|---|---|---|---|
| ସ୍ପର୍ଶ | | | | | |
| ଅଳ୍ପପ୍ରାଣ | ପ, ବ | ତ, ଦ | ଟ, ଡ଼ | ଚ, ଜ | କ, ଗ |
| ମହାପ୍ରାଣ | ଫ, ଭ | ଥ, ଧ | ଠ, ଢ | ଛ, ଝ | ଖ, ଘ |
| N.B.'ଚ' ବର୍ଗର | | ସ୍ପର୍ଶ ସଂଘର୍ଷି | | | |
| ଅନୁନାସିକ | ମ | ନ | ଣ | | ଙ, ଞ |
| ପାର୍ଶ୍ୱିକ | | ଲ | ଳ | | |
| କମ୍ପିତ | ର | | | | |
| ଉତ୍କ୍ଷିପ୍ତ | | | ଡ଼, ଢ଼ | | |
| ଉଷ୍ମ ସଂଘର୍ଷି | ସ | | | | ହ |
| ଅର୍ଦ୍ଧସ୍ୱର | ଓ | | | | ୟ |

## 'ସ୍ୱର' ବର୍ଣ୍ଣର ଇତିହାସ

'ଅ'—ଏହା ଏକ ଅର୍ଦ୍ଧ ବିବୃତ୍ତ ପଶ୍ଚାତ କଣ୍ଠ୍ୟ ସ୍ୱର ଧ୍ୱନି । ଏହା ସଂସ୍କୃତ ପ୍ରାକୃତରୁ ଉଦ୍ଭୂତ । ଏହା ଆ, ଇ, ଉ, ଏ, ଓ ହୋଇ ପାରେ । ତାହାର ସମ ନିମ୍ନରେ ଦିଆଗଲା ।

'ଇ'—ଏହା ସଂସ୍କୃତ ଅଗ୍ର ସଘୋଷ ସ୍ୱର ଧ୍ୱନି । ଏହି ସ୍ୱର-ଧ୍ୱନି ଦୁଇପ୍ରକାର, 'ଇ' ଏବଂ 'ଈ' । 'ଈ' ଅର୍ଥ ଭେଦକ ନୁହେଁ । ଏହା 'ଇ'ର ସହଧ୍ୱନି ବା ପରିପୂରକ ଭାବରେ କାର୍ଯ୍ୟକରେ । ଐ, ଔ—ଏହି ଦୁଇଟି ଦ୍ୱିସ୍ୱର ଧ୍ୱନି ।

'ଋ'—ବ୍ୟବହାରରେ ଦେଖାଯାଏ ଯେ ଏହା ସ୍ୱର ବର୍ଣ୍ଣର ଅନ୍ତର୍ଗତ ନୁହେଁ । ଏହା ବ୍ୟଞ୍ଜନ ବର୍ଣ୍ଣର ଅନ୍ତର୍ଗତ । ଓଡ଼ିଆ ପାରଂପରିକ ବ୍ୟାକରଣ ଗ୍ରନ୍ଥରେ 'ଋ'ର ବ୍ୟବହାର ରହିଛି । ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ Evolution of oriya language and Script ଗବେଷଣା ପୁସ୍ତକରେ ଏହାକୁ ବ୍ୟଞ୍ଜନ ବର୍ଣ୍ଣର ଅନ୍ତର୍ଗତ କରିଅଛନ୍ତି । ଏହାର ପ୍ରଧାନ କାରଣ ହେଲା ଯେ ଏହାର ମୌଳିକ ଉଚ୍ଚାରଣ ଆମେ ହରାଇ ବସିଛୁ । ଏହି 'ଋ' ବିଭିନ୍ନ ଭାଷାରେ ବିଭିନ୍ନ ପ୍ରକାରରେ ଉଚ୍ଚାରିତ ହୋଇଥାଏ । ଆମର 'ଋ' ବଙ୍ଗଳା ଭାଷାରେ 'ରି' ଉଚ୍ଚାରିତ ହୁଏ ।

ପ୍ରାଚୀନ ଓଡ଼ିଆ ସ୍ୱରଧ୍ୱନି ସଂସ୍କୃତ ଓ ପ୍ରାକୃତରୁ ଉଦ୍ଭୂତ :—

ଅ > ଆ ( କକ୍ଷ, ଅଦ୍ୟ ) > ( କାଖ, ଆଜ )
> ଇ ( କଚ୍ଛପ କୋକିଳ ) > ( କଚ୍ଛିମ, କୋଇଲି )
> ଉ ( ପିଞ୍ଜର, ଅଞ୍ଜଳୀ ) > ( ପଞ୍ଜୁରୀ. ଆଞ୍ଜୁଳା )
> ଏ ( ପଙ୍ଗୁ, ଶଯ୍ୟା ) > ( ପେଙ୍ଗା, ଶେଯ )
> ଓ ( ବର୍ଦ୍ଧନ, ପ୍ରବାଳ ) > ( ବୋହତ, ପୋହଳା )

ଆ > ଅ ( ଆର୍ଦ୍ରକ, ଆମଳକ ) > ( ଅଦା, ଅଁଳା )
> ଉ ( ଆବାସ, ପୁରାଣ ) > ( ଉଆସ, ପୁରୁଣା )
> ଏ ( ବିଡ଼ାଲ ) > ( ବିଲେଇ )
> ଓ ( ଧାବକ, ଭଦ୍ର ) > ( ଧୋବା, ଭୋଦୁଅ )

ଇ > ଅ ( ହରିଦ୍ରା, ମୁଷ୍ଟି ) > ( ହଳଦୀ, ମୁଠା )
> ଆ ( ଇକ୍ଷୁ, ଦକ୍ଷିଣ ) > ( ଆଖୁ, ଡାହାଣ )
> ଉ ( ବିନ୍ଦୁ, ଭଗିନୀ, ତୀର୍ଥ ) > ( ବୁନ୍ଦା, ଭଉଣୀ ତୁଠ )
> ଏ ( ନୀଳ, ବିଲ୍ୱ ) > ( ନେଳ. ବେଲ )

ଉ > ଅ ( ମୁକୁଟ, ମୁକୁଳ ) > ( ମଉଡ ମଉଳ )
> ଆ ( ବିନ୍ଦୁ, ଅଂଶୁ ) > ( ବୁନ୍ଦା, ଅଂଶା )
> ଇ ( ପୁତ୍ତଳ, ବାଲୁକା ) > ( ପିତୁଳା, ବାଲି )
> ଏ ( ନୂପୁର, ବାରୁଣୀ ) > ( ନେଉର, ବାରେଣୀ )
> ଓ ( ଓଷ୍ଠ, ପୁଷ୍କରିଣୀ ) > ( ଓଠ, ପୋଖରୀ )

ଏ > ଇ ( କେଦାର, ଦେବର ) > ( କିଆରି ଦିଅର )
> ଉ ( କୁହୁଳ, ନିଃଶ୍ରେଣୀ ) > ( କୁହୁଡ଼, ନିଶୁଣୀ )

ଐ > ଏ ( କୈବର୍ତ୍ତ, ଗୈରିକ ) > ( କେଉଟ, ଗେରୁଆ )
> ଇ ( ଶୈବାଳ, ଐଶାନ୍ୟ ) > ( ଶିଉଳ, ଇଶାଣ )

ଓ > ଉ ( ଅନେକ, ପାଦୋଦକ ) > (ଅ.ନୁଅ, ପାଦୁକ)
> ଅ ( ଗୋଧୂମ, ଚୋଣୀଷ ) > ( ଚହମ, ଗଇଛ )
ଔ > ଉ ( ପୌଗ, ଜୌନାଟକ ) > ( ପୂଗ, ଜୁଆଘ )

## ବ୍ୟଞ୍ଜନ ବର୍ଣ୍ଣର ଇତିହାସ

'କ'—ଏହା ଏକ ଅଘୋଷ, ଅଳ୍ପପ୍ରାଣ, କଣ୍ଠ୍ୟ, ସ୍ପର୍ଶବ୍ୟଞ୍ଜନ ଧ୍ୱନି । ଏହା ସଂସ୍କୃତ—ପ୍ରାକୃତରୁ ଅବିକଳ ଭାବେ ଓଡ଼ିଆକୁ ଆସିଛି । ଏହାର କେତେକ ନମ ନିମ୍ନରେ ଦର୍ଶାଇ ଦିଆଯାଇଛି ।

'ଙ'—ଏହା ଏକ କଣ୍ଠ୍ୟ, ଅଣୁନାସିକ ସଘୋଷ ବ୍ୟଞ୍ଜନ ଧ୍ୱନି । ଶବ୍ଦ ଭିତରେ 'ଙ'ର ଏକକ ପ୍ରୟୋଗ ଓଡ଼ିଆ ସାହିତ୍ୟରେ ଦେଖା ଯାଏ ନାହିଁ । ଏହା ତାହାର ଏକ ବୈଶିଷ୍ଟ୍ୟ । ସ୍ୱବର୍ଗୀୟ ବ୍ୟଞ୍ଜନବର୍ଣ୍ଣ ସହିତ ସଂଯୁକ୍ତ ହୋଇ 'ଙ' ବ୍ୟବହୃତ ହୁଏ ।

'ଞ'—କଣ୍ଠ୍ୟ ଅଣୁନାସିକ ସଘୋଷ ବ୍ୟଞ୍ଜନ ଧ୍ୱନି । ଏହାର ଏକକ ପ୍ରୟୋଗ ଓଡ଼ିଆ ସାହିତ୍ୟରେ ଦେଖାଯାଏ ନାହିଁ । ସ୍ୱବର୍ଗୀୟ ବ୍ୟଞ୍ଜନବର୍ଣ୍ଣ ସହିତ ସଂଯୁକ୍ତ ହୋଇ କାବ୍ୟ ବା ଶବ୍ଦରେ ଏହା ବ୍ୟବହୃତ ହୁଏ ।

'ଣ'—ଏହା ଅଣୁନାସିକ ସଘୋଷ ବ୍ୟଞ୍ଜନ ଧ୍ୱନି । ପ୍ରାଚ୍ୟ ଭାଷା ମଧ୍ୟରେ 'ଣ' ସ୍ୱତନ୍ତ୍ର । ଅପରାପର ଭାରତୀୟ ଭାଷାମାନଙ୍କ ମଧ୍ୟରେ ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ ଓ ମରାଠୀ ଭାଷାରେ ଏହା ଅଛି । ବୈଦିକ, ସଂସ୍କୃତ ଓ ପ୍ରାକୃତରେ ଏହା ମଧ୍ୟ ଥିଲା । ସଂସ୍କୃତ-ପ୍ରାକୃତ ନମରୁ ଏହା ଓଡ଼ିଆକୁ ଆସିଛି । 'ଣ'ର ଉଚ୍ଚାରଣରେ ଜିହ୍ୱାଗ୍ର ପଛକୁ ସାମାନ୍ୟ ଆବର୍ତ୍ତିତ ହୁଏ ଏବଂ କଠିନତାକୁ ସ୍ପର୍ଶକରି ତତ୍‌କ୍ଷଣାତ୍ ସମ୍ମୁଖଦିଗକୁ ପ୍ରସାରିତ ହୁଏ । ଏହା ସ୍ୱବର୍ଗୀୟ

ବର୍ଣ୍ଣମାନଙ୍କ ମଣ୍ଡିତ ସଂଯୁକ୍ତ ହୋଇ ଏକକ ଭାବେ ପଦ ଆଦ୍ୟ ବ୍ୟତୀତ ଅନ୍ୟ ସ୍ଥାନରେ ରହି ପାରେ । ଯଦି 'ଯ୍' ସହିତ 'ଣ' ଯୁକ୍ତ ହୁଏ ତାହେଲେ ଏହା ପଦାନ୍ତରେ ରହେ । ଏହାର ଉଚ୍ଚାରଣ 'ନ' 'ଯ୍' ହେବ । ଯଥା—ଅରଣ୍ୟ । ଅନେକ ସମୟରେ ସଂସ୍କୃତରେ 'ଣ' କୁ 'ନ' ଓ 'ନ' କୁ 'ଣ' ଭାବରେ ବ୍ୟବହାର କରାଯାଏ । ଯଥା —ପର୍ଣ୍ଣ > ପାନ, ପାଣୀୟ > ପାଣି ।

'ନ' ଓ 'ମ'—ଏ ଦୁଇଟି ସଘୋଷ ଅଣୁନାସିକ ବ୍ୟଞ୍ଜନ ଧ୍ୱନି । ଏହା ଅନ୍ୟାନ୍ୟ ବର୍ଣ୍ଣ ପରି ସବୁ ସ୍ଥାନରେ ପ୍ରୟୋଗ ହୋଇ ପାରିବ ।

'ଯ'—ଏହି ବର୍ଣ୍ଣରେ ସଂସ୍କୃତ-ପ୍ରାକୃତର ଓଡ଼ିଆ ଉଚ୍ଚାରଣ ଭେଦ ରହିଛି । ଓଡ଼ିଆରେ 'ଯ' ଓ 'ଜ' ମଧ୍ୟରେ ପ୍ରଭେଦ ଦେଖା ଯାଏ ନାହିଁ । ବଙ୍ଗଳାରେ ମଧ୍ୟ ଏହା ହୋଇଥାଏ । ମୂଳ ସଂସ୍କୃତ 'ଯ' ଉଚ୍ଚାରଣ ପାଇଁ ଓଡ଼ିଆରେ ଏକ ସ୍ୱତନ୍ତ୍ର ଲିପି 'ୟ' ସୃଷ୍ଟି ହୋଇଛି । ଅତି ପ୍ରାଚୀନ କାଳରେ 'ଯ' ଓ 'ଜ' ବର୍ଣ୍ଣରେ ଓଡ଼ିଆରେ ଉଚ୍ଚାରଣ-ଗତ ପାର୍ଥକ୍ୟ ନଥିଲା—ଏହାର ପ୍ରମାଣ ସ୍ୱରୂପ ଆମେ ୧୨ଶ ଶତାବ୍ଦୀର ଦ୍ୱୈଭାଷୀ ଶିଳାଲେଖରେ 'ବଜେ' ଓ 'ଜଲ' ସ୍ଥାନରେ 'ବଯେ' ଓ 'ଯଲ'ର ଉଲ୍ଲେଖ ଦେଖିବାକୁ ପାଉଁ । ଏହାକୁ 'ଚ' ବର୍ଗୀୟ ବର୍ଣ୍ଣ ବୋଲି ଧରିଲେ ଏହା ଏକ ସଘୋଷ, ଅଳ୍ପପ୍ରାଣ ଓ ତାଲବ୍ୟଧ୍ୱନି ଅଟେ ।

'ଳ'—'ଳ' ଓଡ଼ିଆ ଭାଷାର ଏକ ବିଶିଷ୍ଟ ଧ୍ୱନି । ଅନ୍ୟ ପ୍ରତିବେଶୀ ମାଗଧୀ ପ୍ରାକୃତ ଭାଷାରେ ଏହାର ବ୍ୟବହାର ନାହିଁ । ଆଧୁନିକ ଭାଷାମାନଙ୍କ ମଧ୍ୟରେ ପଞ୍ଜାବୀ, ରାଜସ୍ଥାନୀ, ମରାଠୀ ଓ ଗୁଜୁରାଟୀରେ ଏହି ଧ୍ୱନିର ବ୍ୟବହାର ଦେଖାଯାଏ । ଏତଦ୍ଭିନ୍ନ

ସଂସ୍କୃତରେ 'ଳ' ଧ୍ୱନିର ସ୍ଥାନ ମଧ୍ୟ ନାହିଁ । କିନ୍ତୁ ବୈଦିକ-ସଂସ୍କୃତ ଓ ପାଳି-ପ୍ରାକୃତରେ ଏହା ଥିଲା । ତେଣୁ ପ୍ରାକୃତର ଏହି ଧ୍ୱନି ଓଡ଼ିଆକୁ ଆସିଥିବାର ସମ୍ଭାବନା କରାଯାଇ ପାରେ । ଓଡ଼ିଆ 'ଳ' ଉଚ୍ଚାରଣର ବୈଶିଷ୍ଟ୍ୟ ହେଉଛି ଯେ ଜିହ୍ୱାର ଅଗ୍ରଭାଗ ପାଶ୍ଚାତ୍ୟ ଭାଗକୁ ଆମନ୍ତ୍ରିତ ହୋଇ କଠିନ ଭାଗକୁ ଆଘାତ କରେ । ତାପରେ ହଠାତ୍ ସମ୍ମୁଖ ଭାଗରେ ପତିତ ହୁଏ । ଓଡ଼ିଆରେ 'ଳ'ର ବ୍ୟବହାର ୧୨ଶ ଶତାବ୍ଦୀ ବେଳକୁ ଲକ୍ଷ୍ୟ କରାଯାଉଛି । ଦ୍ୱିଭାଷୀ ଶିଳାଲେଖରେ 'ଳ' ଏବଂ 'ଲ' ସ୍ୱତନ୍ତ୍ର ଭାବେ ଉତ୍କୀର୍ଣ୍ଣ ହୋଇଛି । ସେଠାରେ ଦେବନାଗରୀ ଲ ଦୁଇ ପ୍ରକାରେ ଲେଖା ଯାଇଛି । 'ଓଡ଼ିଆ' 'ଳ' ପାଇଁ ନାଗରୀ ଲ ଏବଂ 'ଲ' ପାଇଁ ନାଗରୀ ଲ଼ ଲେଖା ଯାଇଛି ।

ବ—(ଅନ୍ତସ୍ଥ 'ବ') ବର୍ତ୍ତମାନ ଓଡ଼ିଆ ଭାଷାରେ ବର୍ଗୀୟ 'ବ' ଓ ଅନ୍ତସ୍ଥ 'ବ' ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ହିନ୍ଦୀ ଭାଷାରେ ଏହି ବର୍ଗୀୟ 'ବ', 'ଓ୍ୱ' ରୂପରେ ଉଚ୍ଚାରିତ ହୁଏ । ମନେହୁଏ ପ୍ରାଚୀନ କାଳରେ ଉଚ୍ଚାରଣଗତ ପାର୍ଥକ୍ୟ ସମ୍ଭବ ଥିଲା । କାରଣ, ପଞ୍ଚଦଶ ଶତାବ୍ଦୀ ଶିଳାଲେଖରେ ଆମେ ଦେଖିବାକୁ ପାଉ ଯେ 'ବ' ପାଇଁ ଦୁଇଟି ଅକ୍ଷର ଅଛି । ସେଥି ମଧ୍ୟରୁ ଗୋଟିଏ 'ବ' ଓ ଅନ୍ୟଟି 'ବ଼' ଅଟେ । ଏହି 'ବ' ଏକ ଅଳ୍ପପ୍ରାଣ, ଦ୍ୱୟୋଷ୍ଠ୍ୟ ସଘୋଷ ବ୍ୟଞ୍ଜନ ଧ୍ୱନି । ଏହାର ବ୍ୟବହାରରେ କୌଣସି ନିୟମ ପରିଲକ୍ଷିତ ହୁଏ ନାହିଁ । ଏହା ଏକକ ଭାବେ ପଦର ଯେ କୌଣସି ସ୍ଥାନରେ ବ୍ୟବହୃତ ହୋଇପାରେ ।

ସ—ଓଡ଼ିଆ ବର୍ଣ୍ଣମାଳାରେ ତିନି ପ୍ରକାରର 'ସ' ଦେଖା ଯାଉ ଥିଲେହେଁ ଓଡ଼ିଆ ଉଚ୍ଚାରଣରେ କେବଳ 'ସ' ସିଦ୍ଧ ଓ ସ୍ୱାଭାବିକ ଧ୍ୱନି । ବୈଦିକ ଭାଷାରେ ତିନି ପ୍ରକାରର 'ସ' ଦେଖାଯାଉଥିଲେହେଁ

ପ୍ରକୃତରେ ସୂକ୍ଷ୍ମ ଭେଉଁଛି—'ଶ୍ୱେତଦ୍ୱୀପଃ ସଃ'। ଓଡ଼ିଆ ପରି ପଞ୍ଜାବୀ ଓ ହିନ୍ଦୀ ଭାଷାରେ କେବଳ 'ସ' ପରିଦୃଷ୍ଟ ହୁଏ ।

ଡ଼, ଢ଼ :—ଓଡ଼ିଆ ବର୍ଣ୍ଣମାଳାର ଦୁଇଟି ମୂଳ ଅକ୍ଷର ଡ, ଢ ର ଦୁଇଟି ସହଧ୍ୱନି ଦେଖାଯାଏ ଡ଼, ଢ଼ । ଏହି ବର୍ଣ୍ଣ ଦୁଇଟି ପଦାଦ୍ୟରେ ରହେ ନାହିଁ । କିନ୍ତୁ ପଦ ମଧ୍ୟ ଓ ପ୍ରାନ୍ତରେ 'ଡ଼', 'ଢ଼' ପରିପୂରକ ଧ୍ୱନି ଭାବରେ ବ୍ୟବହୃତ ହୁଏ । ଅନେକ କ୍ଷେତ୍ରରେ 'ର' ପରିବର୍ତ୍ତିତ ହୋଇ 'ଡ଼' ହୁଏ । ଯଥା—କର>କଡ଼, ମରା > ମଡ଼ା । ପ୍ରାଚୀନ ଅଭିଲେଖ-ଲିପିରେ 'ଡ'ର ନିମ୍ନରେ ଗୋଟିଏ ବିନ୍ଦୁ ଦେଇ 'ଡ଼' ଲେଖିବାର ପଦ୍ଧତି ଦେଖାଯାଏ ନାହିଁ । ଏ ଦୁଇଟି ଉତ୍କ୍ଷିପ୍ତ ବ୍ୟଞ୍ଜନ ଧ୍ୱନି । ତନ୍ମଧ୍ୟରୁ 'ଡ଼' ସଘୋଷ ଅଳ୍ପ-ପ୍ରାଣ ବ୍ୟଞ୍ଜନ ବର୍ଣ୍ଣ ଓ 'ଢ଼' ସଘୋଷ ମହାପ୍ରାଣ ବ୍ୟଞ୍ଜନ ବର୍ଣ୍ଣ ।

## କେତେକ ବ୍ୟଞ୍ଜନ ଧ୍ୱନିର ଉତ୍ପତ୍ତି କ୍ରମ :—

ଷ>କ—ବୁବୁକ୍ଷା> ଭୋକ, ଭିକ୍ଷା>ଭିକ
ଙ୍ଖ>କ—ଶୃଙ୍ଖଳିକା>ଶିକୁଳି
କ>ଖ—କ୍ରୀଡ଼ା>ଖେଳ, ସଳାକା> ଶଳଖ ।
ସ୍ତ>ଖ—ସ୍ତମ୍ଭ>ଖମ୍ବ, ସ୍ତମ୍ଭାଗାର> ଖମାର
କ୍ଷ>ଖ—କ୍ଷୁଦ୍ର> ଖୁଦ

ଶିଳା ଲେଖରେ 'ଶ' ଓ 'ଖ'ର ଅଖଣ୍ଡ ଯୋଗାଯୋଗ ରହିଛି । ୧୪୦୩ ଶିଳା ଲେଖରେ ଦେଖିବାକୁ ମିଳେ—ଲେଷଇ> ଲେଖଇ, ଅଷଣ୍ଡ> ଅଖଣ୍ଡ ।

କ>ଗ—(ପାକ, ବକ, ଶାକ) > (ପାଗ, ବଗ, ଶାଗ)
ଘ>ଗ—(ଘର୍ମ, ମହାର୍ଘ) > (ଗରମ, ମହରଗ)

ଗ> ଘ—(ଗୃହ) > (ଘର)
ତ> ଚ—(ତଣ୍ଡୁଳ, ନୃତ୍ୟ) > (ଚାଉଳ, ନାଚ)
ଷ> ଛ—ଷଟ୍> ଛ
ସ> ଛ—ସମ୍ମୁଖ> ଛାମୁ
କ୍ଷ> ଛ—କ୍ଷୁରିକା> ଛୁରୀ
ଥ> ଛ—ମିଥ୍ୟା> ମିଛ ।
ସ୍ତ> ଛ—ବିସ୍ତରଣ> ବିଛଣା ।
ଦ> ଜ—ବାଦଲ> ବାଜଣା
ଦ୍ୟ> ଜ—(ସଦ୍ୟ, ଆଦ୍ୟ)> (ସଜ, ଆଜ)
ଦ୍ଧ> ଝ—(ଯୁଦ୍ଧ, ମଧ୍ୟ)> (ଯୁଝ, ମଝି)
କ୍ଷ> ଝ—(କ୍ଷରତ, କ୍ଷାମ)> (ଝରଇ, ଝାମ)
ହ> ଝ—ଦୁହିତା> ଝିଅ
ତ୍ତ> ଠ—(ଲତ୍ତା, ବର୍ତ୍ତୁଳ)> (ଲଠା, ବାଠୁଲା)
ଥ> ଠ—(ଚତୁର୍ଥୀ, ଗ୍ରନ୍ଥ)>(ଚଉଠୀ, ଗୁଠ)
ସ୍ଥ> ଠ—(ସ୍ଥୂଳ, ସ୍ଥାନ)>(ଠୂଳ, ଠାଆ)
ଷ୍ଟ> ଠ—(ମୁଷ୍ଟି, ପିଷ୍ଟକ)> (ମୁଠି, ପିଠା)
ତ> ଡ—(ହରୀତକୀ, ପ୍ରତିବାସୀ)> (ହରଡ଼ା, ପଡ଼ୋଶୀ)
ଦ> ଡ—(ଦର, ଦକ୍ଷିଣ)> (ଡର, ଡାହାଣ)
ର> ଡ—ମର>ମଡା
ଲ> ଡ଼—(ଫାଲ, କଲ ଯୁଗଲ)>(ଫଡ଼ା, କଡ଼, ଯୋଡ଼ା)
ଟ>ଡ—(ପେଟିକା, ତଟ)>(ପେଡ଼ି, ତଡ଼ା)
ଠ> ଢ—(ପଠତି, ବୃଦ୍ଧ)>(ପଢଇ, ବୁଢ଼ା)
ଧ>ଢ—ଧାରପୁତ୍ର>ଢାଳବା
ନ> ଣ—ଫେନ <ଫେଣ, ବନ> ବଣ

ଚ>ଛ—ଗୃଷ>ଚାଷ,

ସ୍ତ>ଥ—(ମସ୍ତକ, ପୁସ୍ତକ, ସ୍ତୋକ)>(ମଥା, ପୋଥି, ଥୋକାଏ)

'ଦ'ର ସ୍ୱତଃ ଆଗମ ହୁଏ; ଯଥା—ବାନର>ବାନ୍ଦର, ପନ୍ନର>ପନ୍ଦର ।

ଭ>ଧ—ଗର୍ଦ୍ଧଭ>ଗଧ

ପ>ଫ—ପାଶ>ଫାଶ

ବ>ଭ—(ବେଶ, ବହ୍ୱଳ)>(ଭେଶ, ଭେଳ)

ବ>ମ—(ବ୍ୟବହାର, ଜିହ୍ୱା)>(ବେଭାର, ଜିଭ)

—(ବିନତି, ବନ୍ତ)>(ମିନତି, ମନ୍ତ)

ଖ>ହ—(ମୁଖ, ସଖୀ)>(ମୁହଁ, ସହୀ)

ଥ>ହ—(କଥନିକା>(କାହାଣୀ)

ଧ>ହ—(ବଧିର, ମଧୁ)>(ବହିରା, ମହୁ)

ବ>ହ—(ପ୍ରବାଳ, ଗବାଳୟ)>(ପୋହଳା, ଗୁହାଳ)

ଭ>ହ—(ଗଭୀର, ପ୍ରଭାତ)>(ଗହୀର, ପାହାନ୍ତା)

———

# ଓଡ଼ିଆ ଭାଷାର ଉଚ୍ଚାରଣଗତ ବୈଶିଷ୍ଟ୍ୟ

ସଂସ୍କୃତ, ଓଡ଼ିଆ ଭାଷାର ଜନନୀ ସ୍ୱରୂପା । ସଂସ୍କୃତରୁ ବହୁଶବ୍ଦ ପ୍ରାକୃତ-ଓଡ଼ିଆରେ ଗୃହୀତ । ହିନ୍ଦୀ, ବଙ୍ଗଳା ଭାଷାରେ ସଂସ୍କୃତରୁ ଗୃହୀତ ହୋଇଥିବା ଶବ୍ଦର ଶେଷବର୍ଣ୍ଣ ଯେପରି ବିକୃତ ହୋଇ 'ହସନ୍ତ' ଯୁକ୍ତ ହୋଇ ବର୍ଣ୍ଣ ଉଚ୍ଚାରିତ ହୁଏ, ଓଡ଼ିଆରେ ସେପରି ହୁଏନାହିଁ । ଏହାହିଁ ଓଡ଼ିଆ ଭାଷାର ପ୍ରଧାନ ବୈଶିଷ୍ଟ୍ୟ । ଅନ୍ୟ କୌଣସି ଭାଷାରେ ସଂସ୍କୃତପରି ଭାଷାର ଧ୍ୱନିଗୁଡ଼ିକ ମୌଳିକ ବୈଜ୍ଞାନିକ ନିୟମରେ ଉଚ୍ଚାରିତ ହୁଏନାହିଁ । ଭାରତର ପ୍ରାଦେଶିକ ଆର୍ଯ୍ୟଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷାହିଁ ଏହି ବିଶେଷତ୍ୱକୁ ଅକ୍ଷୁର୍ଣ୍ଣ ଭାବରେ ରକ୍ଷା କରିଛି । ଓଡ଼ିଆ ଭାଷାର ବିଶେଷତ୍ୱ ହେଲା—

(କ) ଙ, ଣ, ଳ, ଡ଼, ଢ଼ ଏ ପାଞ୍ଚୋଟି ଧ୍ୱନି ପଦାଦ୍ୟରେ ରହେ ନାହିଁ । କିନ୍ତୁ ଅନ୍ୟଭାଷା ଗୁଡ଼ିକରେ ଏହା ରହିଥିବା ଦେଖାଯାଏ ।

(ଖ) 'ମ' ଏବଂ 'ନ'ର ପଦାଦ୍ୟ ଏବଂ ପଦପ୍ରାନ୍ତ ଅବସ୍ଥିତିରେ ଧ୍ୱନିଗତ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଉଦାହରଣ ସ୍ୱରୂପ- 'କାମ' 'ଓ' ମକା । ଏଥିରେ ପ୍ରଥମ ଶବ୍ଦର ଉଚ୍ଚାରଣ 'ମ' ଅଣୁନାସିକ ପରି ଜଣାଯାଉ ଥିବା ସ୍ଥଳେ ଦ୍ୱିତୀୟ ଶବ୍ଦରେ ନୁହେଁ । କିନ୍ତୁ ବଙ୍ଗଳା ଓ ହିନ୍ଦୀ ଭାଷାରେ ଏହି ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ ନାହିଁ ।

(ଗ) ଋ—'ରୁ' । ଏହି 'ଋ' ଧ୍ୱନିଟି 'ରୁ' ଭାବରେ କାବ୍ୟ ବା ଶବ୍ଦମାନଙ୍କରେ ବ୍ୟବହୃତ ହେଉଅଛି । ଏହା ବ୍ୟଞ୍ଜନ ବର୍ଣ୍ଣମାନଙ୍କ

ସହ ମିଶି ଉଚ୍ଚାରିତ ହୋଇଥାଏ । ଏହାର ପ୍ରୟୋଗ ସଂସ୍କୃତ-ବୈଦିକ ଭାଷାରେ ଥିଲା । କିନ୍ତୁ ଓଡ଼ିଆ ସାହିତ୍ୟରେ ଏହା ସ୍ୱରବର୍ଣ୍ଣର ଅନ୍ତର୍ଗତ । କିନ୍ତୁ ବ୍ୟଞ୍ଜନବର୍ଣ୍ଣମାନଙ୍କ ସାହାଯ୍ୟରେ ବ୍ୟବହୃତ । ତେଣୁ କେହି କେହି ଏହାକୁ 'ନବାକ୍ଷର' କହନ୍ତି । ବଙ୍ଗଳାରେ ଏହି 'ରି', 'ରି' ଭାବରେ ଉଚ୍ଚାରିତ ।

(ଘ) ଚ, ଛ, ଜ, ଝ ଘୃଷ୍ଟଧ୍ୱନି ( Afficate )—ଏହି ଗୁଡ଼ିକ ଧ୍ୱନି ଉଚ୍ଚାରିତ ହେବା ସମୟରେ ଏମାନଙ୍କ ଅବସ୍ଥିତି ଖୁବ୍ ଅଳ୍ପ ସମୟ । ତେଣୁ ଏହି ଗୁଡ଼ିକ ବର୍ଣ୍ଣ ଘୃଷ୍ଟ ଅଟେ ।

(ଙ) 'ତ' ବର୍ଗ ଦନ୍ତମୂଳୀୟ—'ତ' ବର୍ଗର ବର୍ଣ୍ଣଗୁଡ଼ିକ ଦନ୍ତମୂଳରେ ଉଚ୍ଚାରିତ ହୁଅନ୍ତି । କିନ୍ତୁ ଅନ୍ୟ କୌଣସି ପଡ଼ୋଶୀ ଭାଷାମାନଙ୍କରେ ଏହା ପରିଦୃଷ୍ଟ ହୁଏ ନାହିଁ ।

(ଚ) କେବଳ ଦନ୍ତମୂଳୀୟ 'ସ'ର ବ୍ୟବହାର ଦେଖାଯାଏ ।

(ଛ) 'ଡ', 'ଢ' ପଦ ଆଦ୍ୟ ବ୍ୟତୀତ ଅନ୍ୟତ୍ର ଡ଼, ଢ଼, ହୁଏ । କିନ୍ତୁ ଅନୁନାସିକ୍ୟ ବର୍ଣ୍ଣ ସହିତ ସଂଯୁକ୍ତ ହୋଇଥିଲେ ତାହା ହୁଏ ନାହିଁ । ଉଦାହରଣ ସ୍ୱରୂପ—ଖଡ୍ଗ > ଖଣ୍ଡା, ମଡ଼ା > ମଣ୍ଡା ।

(ଜ) 'ଷ୍ୟ'ର ଉଚ୍ଚାରଣ 'ଖ୍ୟ' ହୁଏ । ଲିଖିତ ଅନୁସାରେ ଯଥା 'କକ୍ଷ' ଏହା ଉଚ୍ଚାରଣ ହୁଏନାହିଁ । 'କଖ୍ୟ' ଉଚ୍ଚାରିତ ହୁଏ । ଅନ୍ୟ ଭାଷାରେ ଏପରି ବୈଶିଷ୍ଟ୍ୟ ନାହିଁ ।

(ଝ) ଣ୍ୟ = ନ୍ୟ । 'ଅରଣ୍ୟ'କୁ ଉଚ୍ଚାରଣ କଲା ସମୟରେ ଅରନ୍ୟ ହୁଏ ।

(ଞ) ମ୍ଭ—ମ୍ବ = କୁମ୍ବ, ସ୍ତମ୍ବ ।

(ଝ) ହ୍ବ° = ଘ—ସିଂହ୍ବ—ସିଘ

(ଠ) ଷ୍ଣ—ଷ୍ଟ°—କୃଷ୍ଟ—କୃଷ୍ଟ

(ଡ) 'ହ୍ବ' ର 'ୟ' = 'ଯ୍ୟ' ହୁଏ (ଉଚ୍ଚାରିତ), କିନ୍ତୁ ଲିଖିତ 'ସହ୍ୟ'।

(ଢ) ପଦାନ୍ତରେ ଯୁକ୍ତ ଧ୍ୱନି ରହେ ନାହିଁ। ଯଥା—ମୁକ୍ତାରେ, 'ତ'ର ଉଚ୍ଚାରଣ ଅଲଗା। କିନ୍ତୁ ଇଂରାଜୀ ଶବ୍ଦ 'ବକ୍‌ସ'ରେ ଏହା ମିଶି ରହିଛି।

(ଣ) 'ଓ୍ୱ' ଧ୍ୱନି ପଦାନ୍ତରେ ସମ୍ବୋଧନାତ୍ମକ ବ୍ୟତୀତ ଅନ୍ୟତ୍ର ପରିଲକ୍ଷିତ ହୁଏନାହିଁ।

(ତ) Penultinate vowel ଶେଷବର୍ଣ୍ଣର ପୂର୍ବ ଉପରେ ରହେ।

(ଥ) ସଂଯୁକ୍ତ ବର୍ଣ୍ଣର ପ୍ରଥମ ଅକ୍ଷର ପୂର୍ଣ୍ଣଉଚ୍ଚାରିତ ହୁଏ ନାହିଁ।

(ଦ) ଏତଦ୍‌ବ୍ୟତୀତ ଓଡ଼ିଆ ଭାଷାରେ ଦୁଇଟି ବଚନ ପରିଲକ୍ଷିତ ହୁଏ। ଯଥା—ଏକ ବଚନ ଓ ବହୁ ବଚନ। ସଂସ୍କୃତରେ ତିନୋଟି ବଚନ ପରିଦୃଷ୍ଟ ହୁଏ।

———

## ଲିଙ୍ଗ

ଓଡ଼ିଆ ଲିଙ୍ଗ ବିଧିରେ ସଂସ୍କୃତ, ହିନ୍ଦୀ କିମ୍ବା କେତେକ ଆଧୁନିକ ଭାଷାର ଜଟିଳତା ନାହିଁ । ସଂସ୍କୃତରେ ଲିଙ୍ଗ ଭେଦରେ କାରକ ଭିନ୍ନ ହୁଏ । କ୍ରିୟା ପ୍ରୟୋଗରେ ଓ ସର୍ବନାମ ବ୍ୟବହାରରେ ଇଂରାଜୀପରି ଲିଙ୍ଗ ପରିବର୍ତ୍ତନର ବ୍ୟତିକ୍ରମ ଦେଖାଯାଏ । ଓଡ଼ିଆରେ ଶବ୍ଦର ଲିଙ୍ଗ ନିର୍ଣ୍ଣୟ କରିବା ଯେପରି ସହଜ ଲିଙ୍ଗ ରୂପାନ୍ତର କରିବା ମଧ୍ୟ ତଦନୁରୂପ ସହଜ । କେତେଗୁଡ଼ିଏ ସୁପରିଚିତ ଏବଂ ନିର୍ଦ୍ଦିଷ୍ଟ ସ୍ତ୍ରୀପ୍ରତ୍ୟୟ ପ୍ରୟୋଗରେ ଓଡ଼ିଆରେ ଲିଙ୍ଗ ପରିବର୍ତ୍ତନ ହୋଇଥାଏ । ଏପରିକି ବିଶେଷଣ ପ୍ରୟୋଗରେ ଲିଙ୍ଗର ଅନୁରୂପ ବିଶେଷଣ ନହେଲେ ମଧ୍ୟ ଓଡ଼ିଆରେ ତାହା ଦୋଷଯୁକ୍ତ ନୁହେଁ । ଓଡ଼ିଆରେ ଲିଙ୍ଗ ଦ୍ୱିବିଧ—ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ । ଅପ୍ରାଣୀବାଚକ ସମସ୍ତ ବିଶେଷ୍ୟ କ୍ଳୀବଲିଙ୍ଗ । ପୁଂଲିଙ୍ଗ ଶବ୍ଦରେ ସ୍ତ୍ରୀଲିଙ୍ଗ—ପ୍ରତ୍ୟୟ ସଂଯୋଗ କରାଯାଏ । ଓଡ଼ିଆରେ ନିମ୍ନଲିଖିତ ପ୍ରତ୍ୟୟମାନ ଯୋଗ କରାଯାଏ । ଯଥା—ଈ, ଆଣି, ଉଣି, ଇଣୀ—ଏହି ପ୍ରତ୍ୟୟ ଗୁଡ଼ିକ ସଂସ୍କୃତରୁ ଗୃହୀତ ହୋଇଛି । ଆଉ କେତେକ ସ୍ଥଳରେ ସ୍ୱତନ୍ତ୍ର ଶବ୍ଦ ବ୍ୟବହାର କରାଯାଏ । ଯଥା—ପୁଅ ଝିଅ, ବଳଦ-ଗାଈ । କେତେକ ଶବ୍ଦରେ ଲିଙ୍ଗ ନିର୍ଦ୍ଦେଶ କରିବା ପାଇଁ ଶବ୍ଦ ପୂର୍ବରେ ଅଣ୍ଡିରା ବା ମାଈ ଶବ୍ଦ ଯୋଗ କରାଯାଏ

ଲିଙ୍ଗ ପରିବର୍ତ୍ତନ ସଙ୍ଗରେ ସର୍ବନାମ, ବିଶେଷଣ, କ୍ରିୟା ଇତ୍ୟାଦିରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ଉଦାହରଣ ସ୍ୱରୂପ—ସେ ଗୋଟେ ପୁଅଟି ଖେଳୁଛି । ସେହିପରି ସେ ଗୋଟେ ଝିଅଟି ଖେଳୁଛି, ଇତ୍ୟାଦି । ଏଠାରେ ଲିଙ୍ଗ ପରିବର୍ତ୍ତନ ଛଡ଼ା ଅନ୍ୟ କିଛି ପରିବର୍ତ୍ତିତ ହେଉ ନାହିଁ । କେତେକ ଭାରତୀୟ ଭାଷାରେ ଲିଙ୍ଗ ବିଧିରେ ଯେଉଁ ସବୁ ଜଟିଳତା ରହିଛି ଓଡ଼ିଆ ଭାଷା ସେଥିରୁ ମୁକ୍ତ ।

## ବଚନ

ସଂସ୍କୃତରେ ତିନୋଟି ବଚନର ପ୍ରୟୋଗ ଅଛି । ସେଗୁଡ଼ିକ ହେଲା— ଏକବଚନ, ଦ୍ୱିବଚନ ଓ ବହୁବଚନ । କିନ୍ତୁ ଓଡ଼ିଆରେ ଦୁଇଟି ବଚନ ଦେଖାଯାଏ—ଏକବଚନ ଓ ବହୁବଚନ । ଦ୍ୱିବଚନ ଓଡ଼ିଆରେ ନାହିଁ । ଏହି ବଚନଟି କେତେଗୁଡ଼ିଏ ଶବ୍ଦ ମିଶ୍ରଣରେ ପ୍ରକାଶ କରି ଯାଇଥାଏ । ଉଦାହରଣ ସ୍ୱରୂପ—ହଳଯୋଡ଼ା ଯାଉଁଳି, ଦୁହେଁ ଇତ୍ୟାଦି ।

ଓଡ଼ିଆ ଏକ ବଚନରେ କୌଣସି ପ୍ରତ୍ୟୟ ଲାଗେ ନାହିଁ । ମୂଳ ପ୍ରତିପାଦିତ ଶବ୍ଦ ସବୁବେଳେ ଏକ ବଚନାତ୍ମକ । ଯାହା ସାଧାରଣ ଶବ୍ଦ ତାହା ଏକ ବଚନ ଅଟେ । ଯଥା—ଗଛ, ପିଲା, ଇତ୍ୟାଦି । ଓଡ଼ିଆରେ ବହୁବଚନ କେତେକ ପ୍ରତ୍ୟୟ ସହ ଯୋଗରେ ନିଷ୍ପନ୍ନ ହୁଏ । ଏହି ପ୍ରତ୍ୟୟମାନଙ୍କ ଭିତରେ ପ୍ରଧାନ ହେଉଛି—ଏ, ମାନେ ବା ମାନ ।

କାବ୍ୟ ସାହିତ୍ୟରେ ଏବଂ ସାଧାରଣ ଭାଷାରେ 'ଏ' ପ୍ରତ୍ୟୟର ବ୍ୟବହାର ଦେଖାଯାଏ । ଏକ ବଚନର 'ଏ' ପ୍ରତ୍ୟୟ ଏକ ଶବ୍ଦରୁ ଜାତ । ଯଥା—ପିଲାଏ, ପିଲେ ଖେଳୁଛନ୍ତି । ବାଳକେ ମୋର

ବୋଲି କର । ବହୁବଚନର 'ଏ' ପ୍ରତ୍ୟୟ ଉତ୍ପତ୍ତି ସଂପର୍କରେ ତିନୋଟି ମତ ଦେଖାଯାଏ ।

(କ) ଡଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ମତରେ ଏଭିଃ > ଏ । ସଂସ୍କୃତର ତୃତୀୟା ବହୁବଚନ ଓଡ଼ିଆରେ 'ଏ' ହୋଇଛି ।

(ଖ) ବିମ୍ ସାହେବଙ୍କ ମତ ଅନୁସାରେ ସଂସ୍କୃତ ଅକାରାନ୍ତ ଶବ୍ଦର ବହୁ ବଚନ ପ୍ରତ୍ୟୟ 'ଆଃ' ଓଡ଼ିଆରେ 'ଏ' ହୋଇ ରହିଛି । ସଂସ୍କୃତ ନରାଃ ଏ, ପ୍ରାକୃତ ।

(ଗ) ଗୋପୀନାଥନନ୍ଦଙ୍କ ମତରେ—ସର୍ବେ, ତେ, କେ, ଇତ୍ୟାଦି ସଂସ୍କୃତ—ସର୍ବନାମ ଶବ୍ଦଗୁଡ଼ିକରେ ବହୁବଚନ ପ୍ରୟୋଗରେ ଏକାରାନ୍ତ ହେବାର ଦେଖାଯାଉଛି । ଏହି ରୀତି ଓଡ଼ିଆରେ ଗୃହୀତ ହୋଇଅଛି ।

**'ମାନେ'**—ଏହା ସମ୍ପର୍କରେ ବହୁତଗୁଡ଼ିଏ ମତ ରହିଛି । ପ୍ରାଚୀନ ଭାଷା ମଧ୍ୟରେ ମାଗଧୀ ଅପଭ୍ରଂଶରେ ଏହି 'ମାନେ'ର ସ୍ୱାତନ୍ତ୍ର୍ୟ ରହିଛି । ଛତିଶଗଡ଼ ଭାଷା ବ୍ୟତୀତ ଅନ୍ୟ କୌଣସି ଭାଷାରେ ଏହା ପରିଦୃଷ୍ଟ ହୁଏ ନାହିଁ ।

ଖ୍ରୀ: ୧୨୮୮ଷ୍ଟାବ୍ଦର ସୀମାଚଳମ ଶିଳା-ଲେଖରେ ଏହି 'ମାନେ' ପ୍ରତ୍ୟୟ ଦେଖିବାକୁ ମିଳେ । 'ମାନେ' ସମ୍ପର୍କୀୟ ମତବାଦ-ଗୁଡ଼ିକ ହେଲା—

(କ) ବିଜୟଚନ୍ଦ୍ର ମଜୁମଦାର ତାଙ୍କ History of Bengali-language ପୁସ୍ତକରେ ମତ ଦେଇଛନ୍ତି ଯେ ବିହାରୀ 'ବନ' ପ୍ରତ୍ୟୟ ଓଡ଼ିଆରେ 'ମାନ୍' ହୋଇଛି ।

(ଖ) ଶ୍ରୀସୁରସନ ଓ ସୁନୀତିକୁମାର ଚଟ୍ଟୋପାଧ୍ୟାୟଙ୍କ ମତାନୁଯାୟୀ ମାନବ> ମାନେ ହୋଇଛି ।

(ଗ) ପଣ୍ଡିତ ବିନାୟକ ମିଶ୍ରଙ୍କ ମତାନୁସାରେ 'ଗଣ୍ଡ' ଭାଷାରେ 'ଅମାଡ୍', ଓଡ଼ିଆରେ 'ଆସନ୍ତ' ଓ ଏଥିରୁ 'ମାନେ' ପ୍ରତ୍ୟୟ ଆସିଛି । ଅମାଡ> ଆସନ୍ତ> ମାନେ; ମାଳ> ମାନେ ।

(ଘ) ଗୋପୀନାଥ ନନ୍ଦଙ୍କ ମତରେ 'ମାନ୍ୟ' ଶବ୍ଦରୁ ମାନେ ଆସିଛି । ଏହା 'ମାନ୍ୟ' ବହୁ ବଚନ ହିସାବରେ ବ୍ୟବହୃତ ହେଉଛି ।

(ଙ) Hoernole ଙ୍କ ମତରେ 'ମନୁଖ' ଶବ୍ଦରୁ ମାନେ ଆସିଛି ।

(ଚ) ଡଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ମତରେ 'ମାନୁଷ'ରୁ 'ମାନେ' ହୋଇଛି ।

ଉପରୋକ୍ତ ମତଗୁଡ଼ିକ ମଧ୍ୟରୁ ମାନବ ବା ମନୁଷ୍ୟ ଶବ୍ଦରୁ 'ମାନେ' ଆସିଥିବା ସମ୍ପର୍କରେ ଅଧିକ ସମ୍ଭାବନା ଦେଖାଯାଏ । ହିନ୍ଦୀର ବହୁ ବଚନରେ 'ଲୋଗ' ପ୍ରୟୋଗ ହୁଏ । ଏହା ମାନବ ବାଚୀ ଶବ୍ଦ । ଭୋଜପୁରିଆରେ 'ମନୁଖ' ଶବ୍ଦର ବହୁବଚନ ରୂପ 'ମନୁଖ୍ୟୀ' । ପୂର୍ବ ହିନ୍ଦୀର ଏକ ଶାଖା ଛତିଶଗଡ଼ରେ ବହୁ ବଚନ ପ୍ରତ୍ୟୟ ହେଉଛି 'ମନ୍' । ତେଣୁ 'ମନୁଷ୍ୟ' ଶବ୍ଦରୁ ମାନେ ଆସିଥିବା କଥା ନିର୍ଦ୍ଧାରଣ କରାଯାଇ ପାରେ ।

ମାନୁଷ୍ୟେ > ମାନଷେ> ମାନହେ > ମାନଏ > ମାନେ ।

ଆଜି କେତେଗୁଡ଼ିଏ ଶବ୍ଦ ବହୁ ବଚନରେ ପ୍ରୟୋଗ କରାଯାଏ, ଯଥା—ଗୁଡ଼ା, ଗୁଡ଼ାକ, ଗୁଡ଼ିଏ, ମାନ, ଦଳ, ମେଳା, ବର୍ଗ, ସବୁ, ବହୁ ଇତ୍ୟାଦି ।

———

## ଓଡ଼ିଆ ସର୍ବନାମ ସମ୍ବନ୍ଧରେ କେତୋଟି କଥା—

(କ) ଭାରତୀୟ ସକଳ ଆର୍ଯ୍ୟ ଭାଷାର ସର୍ବନାମ ପଦଗୁଡ଼ିକ ପ୍ରାୟ ସମାନ ଏବଂ ଏଗୁଡ଼ିକ ସଂସ୍କୃତ ଓ ପ୍ରାକୃତରୁ ଗୃହୀତ ହୋଇଅଛି ।

(ଖ) ଓଡ଼ିଆ ସର୍ବନାମ ପଦଗୁଡ଼ିକ ପ୍ରାଚୀନ ଆର୍ଯ୍ୟଭାଷାର ସମ୍ବନ୍ଧାନ୍ୱିତ ।

(ଗ) ଓଡ଼ିଆରେ ଦୂରନିର୍ଦ୍ଦେଶକ ସର୍ବନାମ ନାହିଁ ।

(ଘ) ଓଡ଼ିଆ ସର୍ବନାମରେ ଲିଙ୍ଗଭେଦ ନାହିଁ ।

(ଙ) ସାଧାରଣ ଓ ସମ୍ଭ୍ରମବାଚକ ଭାବେ ସର୍ବନାମ ଦ୍ୱିବିଧ । ଯଥା—ତୁ, ତୁମେ, ଆପଣ । କିନ୍ତୁ ଇଂରାଜୀ You ସମସ୍ତଙ୍କ ପାଇଁ ।

(ଚ) ଓଡ଼ିଆ ସର୍ବନାମପଦ ଏକାରାନ୍ତ ହୁଏ, ଯଥା— ଆମେ, ତମେ, ସେ, ଏକ, ଯେ ଇତ୍ୟାଦି ।

(ଛ) ନାନାପ୍ରକାରର ସର୍ବନାମଜାତ ପଦ ନିଷ୍ପନ୍ନ ହୋଇଥାଏ । ଯଥା—ସଂଖ୍ୟା ଓ ପରିମାଣ ବାଚକ—ଏତେ, ଯେତେ, କେତେ ।

କାଳ ବାଚକ—କେବେ, ଯେବେ
ସ୍ଥାନ ବାଚକ—କେଉଁଠି, ଯେଉଁଠି, ଯହିଁ
ଗୁଣ ବାଚକ—କେମନ୍ତ ଯେମନ୍ତ, ଏମନ୍ତ

# ବିଭକ୍ତି ପ୍ରତ୍ୟୟର ଇତିହାସ

ଦ୍ୱିତୀୟା ବିଭକ୍ତି 'କୁ':—ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ଏହି 'କୁ' ଆମେ ଦ୍ରାବିଡ଼ ଭାଷାରୁ ଗ୍ରହଣ କରିଛୁଁ । ତାମିଲ ଭାଷାରେ ୪ର୍ଥୀ ବିଭକ୍ତିରେ ଏହି 'କୁ' ପ୍ରତ୍ୟୟ ହୁଏ ।

ଦ୍ୱିତୀୟତଃ, ପଣ୍ଡିତ ଗୋପୀନାଥ ନନ୍ଦ ମତ ପ୍ରକାଶ କରନ୍ତି ଯେ ପ୍ରାକୃତରେ 'ଢ' ପ୍ରତ୍ୟୟ ପରେ 'କୁ' ହୋଇ ବ୍ୟବହୃତ ହୋଇ ଅଛି । ଏହି 'ଢ' ପ୍ରତ୍ୟୟଟି କାଳକ୍ରମେ 'କୁ' ହୋଇ ଆଧୁନିକ ଓଡ଼ିଆ ବ୍ୟାକରଣ ତଥା ସାହିତ୍ୟରେ ବ୍ୟବହୃତ ହେଉ ଅଛି । ଉଦାହରଣ ସ୍ୱରୂପ—ଅପ୍ପଢ = ଆପଣଙ୍କୁ ।

ତୃତୀୟତଃ, ମୂଳ ସଂସ୍କୃତଶବ୍ଦରୁ ଏହା ଆସିଅଛି । ଯେଉଁ ସଂସ୍କୃତ ଶବ୍ଦଟି 'କକ୍ଷ' ବା 'କକ୍ଷେ' ବିମ୍ସ, ହାର୍ନୋଲ୍ଡ଼, କାଲେନ, ସୁନୀତି ଚାଟର୍ଜୀ ଓ ଶ୍ୟାମସୁନ୍ଦର ରାଜଗୁରୁ ଏହି ମତର ପୃଷ୍ଠ ପୋଷକ । ସେମାନଙ୍କ ମତରେ 'କକ୍ଷ' ଶବ୍ଦଟି ପରିବର୍ତ୍ତିତ ହୋଇ 'କୁ' ହୋଇଛି ।

ଚତୁର୍ଥତଃ, 'କୁ' ପ୍ରତ୍ୟୟଟି କକ୍ଷ ଶବ୍ଦରୁ ଆସିନାହିଁ । ଏହି 'କୁ'ର ମୂଳ ଶବ୍ଦ ହେଉଛି—କୃତେ ବା କୃତ । ଏହି ମତର ପୃଷ୍ଠ ପୋଷକ ହେଉଛନ୍ତି ସୁକୁମାର ସେନ, ବାଣୀକଣ୍ଠ କାକତି ଓ ଗ୍ରୀୟରସନ୍ ।

କୃତଃ > କଉ > କୋ > କୁ କିମ୍ବା କୃତ > କଏ > କଇ > କ > କେ > କୁ । ପଞ୍ଚମରେ ଭଣ୍ଡାରକରଙ୍କ ମତରେ ସଂସ୍କୃତ ଶବ୍ଦ 'କମ୍'ରୁ କେହି ଓ ସେଥିରୁ କୁ, କେ ହୋଇଛି ।

ସର୍ବଶେଷରେ ସିଦ୍ଧାନ୍ତ ଦୃଷ୍ଟିରୁ ଉପରୋକ୍ତ ମତଗୁଡ଼ିକୁ ଲକ୍ଷ୍ୟ କଲେ ଠିକ୍ ଭାବେ ବୁଝିହୁଏ ଯେ 'କୃତେ'ରୁ ଚତୁର୍ଥୀ ବିଭକ୍ତି 'କୁ' ଏବଂ 'କକ୍ଷ'ରୁ ଦ୍ୱିତୀୟା 'କୁ' ଆସିଛି ।

ତୃତୀୟା ବିଭକ୍ତି 'ଏ':—ଏହି 'ଏ' ସଂସ୍କୃତ 'ଏନ'ରୁ ଆସିଛି । ଯଥା—ନରେଣ, ପ୍ରାଚୀନ । ଓଡ଼ିଆରେ 'ଏଣ୍' ପ୍ରତ୍ୟୟର ପ୍ରୟୋଗ ଦେଖିବାକୁ ମିଳେ । ଦ୍ୱିତୀୟମତ ହେଉଛି 'ଭିଃ'ରୁ ମଧ୍ୟ 'ଏ' ଆସିଛି—ଭିଃ > ହିଃ > ଇ > ଏଇ > ଏ । ତେଣୁ, ଏହି 'ଏ' ପ୍ରତ୍ୟୟକୁ ଆମେ ସିଧାସଳଖ ଭାବେ ସଂସ୍କୃତରୁ ପାଇଅଛୁ ।

'ରେ' ପ୍ରତ୍ୟୟ:—ରାଜଗୁରୁଙ୍କ ମତରେ 'କୃତେ' ଶବ୍ଦରୁ 'ରେ' ପ୍ରତ୍ୟୟ ଆସିଛି । ତାଙ୍କ ମତରେ—କୃତେ > କରିତେ> କରିଏ > ରିଏ > ରେ ।

ପଞ୍ଚମୀବିଭକ୍ତି 'ଉ':—ଏହି 'ଉ' ପ୍ରତ୍ୟୟ ସୃଷ୍ଟି ସମ୍ବନ୍ଧରେ ତିନୋଟି ମତ ପରିଦୃଷ୍ଟହୁଏ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ମତ ଅନୁସାରେ, ପ୍ରାକୃତ ପଞ୍ଚମୀ ବିଭକ୍ତି 'ଦୁ' ବା 'ଉ' ଓଡ଼ିଆରେ 'ଉ' ପ୍ରତ୍ୟୟ ରୂପେ ବ୍ୟବହୃତ ହେଉଅଛି । ଡଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ମତରେ ପ୍ରାକୃତ ପଞ୍ଚମୀ ବିଭକ୍ତି ପ୍ରତ୍ୟୟ 'ହୁଁ' > ଉ ହୋଇଛି । ରାଜଗୁରୁଙ୍କ ମତରେ ସଂସ୍କୃତ ପଞ୍ଚମୀ ବିଭକ୍ତି ପ୍ରତ୍ୟୟ 'ଆତ'(ଯଥା-ନରାତ୍) > ଆଦୁ > ଆଉ୍ > ଉ୍ > ରୁ > ଉ । ଉପରୋକ୍ତ ତିନୋଟି ମତମଧ୍ୟରୁ ପ୍ରଥମ ଓ ଦ୍ୱିତୀୟମତ ଯୁକ୍ତିଯୁକ୍ତ ମନେ ହୁଏ । ତୃତୀୟ ମତଟି ଅବାସ୍ତବ । କାରଣ 'ଆତ'ରୁ 'ଉ' ହୋଇପାରିବ ନାହିଁ ।

ଷଷ୍ଠୀବିଭକ୍ତି 'ର':—ପଣ୍ଡିତ ଗୋପୀନାଥନନ୍ଦ ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମତରେ ପ୍ରାକୃତ 'କେର' ବା 'କେରକ' ରୁ 'ର' ଆସିଛି । ହାର୍ନୋଲ ସାହେବ ଓ କେଲଗଙ୍କ ମତରେ—କୃତ> କରିତୋ > କରିୟୋ >କେର>ର । Lassen, Weber & Pischel ଙ୍କ ଅନୁସାରେ ମୂଳଶବ୍ଦ 'କାର୍ଯ୍ୟ' ରୁ 'କେର' ହୋଇଛି । ଭାଷାତତ୍ତ୍ୱବିତ୍ ବିମ୍‌ସଙ୍କ ମତରେ—କୃତସ୍ > କରିଓ >କେରୋ>

ଜଗ > ଜର > ର । ବିଜୟଚନ୍ଦ୍ର ମଜୁମ୍‌ଦାର ମତରେ ଅନ୍ୟ— ସ୍ୟ > ସ୍ସ > ସ > ଜ୍ଞ > ହଃ > ର । ପଣ୍ଡିତ ବିନାୟକ ମିଶ୍ରଙ୍କ ମତ ଯେ ଦ୍ରାବିଡ଼ ପ୍ରଭାବରେ 'ସ' ଟା ଓଡ଼ିଆରେ 'ର' ହୋଇଛି ।

## କ୍ରିୟାବିଧି ( Verbal System )

ଓଡ଼ିଆରେ କ୍ରିୟାର ସର୍ବମୋଟ ସତରଟି ରୂପ ଦେଖାଯାଏ । ଯଥା—ଅତୀତ, ବର୍ତ୍ତମାନ, ଭବିଷ୍ୟତ କାଳ ଓ ସର୍ତ୍ତମୂଳକ ଭାବରେ ସାମାନ୍ୟ, ସମ୍ପନ୍ନ, ଅସଂପନ୍ନ ଭେଦରେ ତିନୋଟି କରି ରୂପ ( ୪ × ୩ = ୧୨ ) ନିତ୍ୟ ପ୍ରବୃତ୍ତି ବା Habitual ରେ ସଂପନ୍ନ ଓ ଅଂସପନ୍ନ ଦୁଇରୂପ ଓ ଅନୁଜ୍ଞାରେ ସାମାନ୍ୟ, ସଂପନ୍ନ ଓ ଅସଂପନ୍ନ ତିନି ରୂପ, ଏପରି ମୋଟ ସତରଟି ଦେଖାଯାଏ ।

ଓଡ଼ିଆ କ୍ରିୟାପଦ ନିମ୍ନଲିଖିତ ଭାବରେ ନିର୍ମିତ ହୁଏ—ଧାତୁ + Aspect ସୂଚକ ପ୍ରତ୍ୟୟ + ସହାୟକଧାତୁପ୍ରତ୍ୟୟ + କାଳ ବା ଭାବ—ନିର୍ଦ୍ଦେଶକ + ପୁରୁଷ ଓ ବଚନ ପ୍ରତ୍ୟୟ । ଦୃଷ୍ଟାନ୍ତ ସ୍ୱରୂପ—କ୍ରିୟାପଦ 'ଖେଳୁଥିବ' ବିଶ୍ଳେଷଣ କଲେ ଦେଖାଯାଏ— ଖେଳ + ଉ + ଥା + ବ + ଉ ।

## ବିଭିନ୍ନ କ୍ରିୟାରୂପର ଭିନ୍ନ ଭିନ୍ନ ପ୍ରତ୍ୟୟ :—

| | |
|---|---|
| କାଳ ଓ ଭାବ ନିର୍ଦ୍ଦେଶକ | ବର୍ତ୍ତମାନ—ଛ |
| | ଅତୀତ—ଲ |
| | ଭବିଷ୍ୟତ—ବ |
| | ସର୍ତ୍ତମୂଳକ—ନ୍ତ |

| | | |
|---|---|---|
| Aspect ସୂଚକ | } | ଅସଂପନ୍ନ—ଉ<br>ସଂପନ୍ନ—ଇ |
| ବଚନ ଓ ପୁରୁଷ ନିର୍ଦ୍ଦେଶକ | | ପ୍ରଥମ ପୁରୁଷ (ଏକ ବଚନ)—ଇ<br>ପ୍ରଥମ ପୁରୁଷ (ବହୁବଚନ)—ଉଁ<br>ଦ୍ୱିତୀୟ ପୁରୁଷ (ଏକବଚନ)—ଉ<br>ଦ୍ୱିତୀୟ ପୁରୁଷ (ବହୁବଚନ)—ଅ<br>ଦ୍ୱିତୀୟ ପୁରୁଷ (ସମ୍ଭ୍ରମବାଚକ)—ନ୍ତି<br>ତୃତୀୟ ପୁରୁଷ (ଏକବଚନ)—ଅ, ଏ<br>ତୃତୀୟ ପୁରୁଷ (ବହୁବଚନ)—ଏ, ନ୍ତି |

ଓଡ଼ିଆ ସହାୟକ କ୍ରିୟା—ଓଡ଼ିଆ ଶବ୍ଦ ଗଠନରେ ଦୁଇଟି ସହାୟକ କ୍ରିୟା ବ୍ୟବହୃତ ହୋଇଥାଏ, ଯଥା—'ଅଛ' ଏବଂ 'ଥା'। ଯେଉଁ ପଦଗୁଡ଼ିକ ସହାୟକ କ୍ରିୟା ଯୋଗରେ ଗଠିତ ହୋଇଥାଏ ସେଗୁଡ଼ିକୁ ସଂଯୁକ୍ତ ବା ଯୌଗିକ କ୍ରିୟାପଦ କୁହାଯାଏ। ଯେଉଁଥିରେ ସହାୟକ କ୍ରିୟାପଦ ନଥାଏ ତାହାକୁ ସରଳ ପଦ ବା Simple Form କୁହାଯାଏ। ସରଳପଦଗୁଡ଼ିକ ଦୁଇ ଶ୍ରେଣୀରେ ବିଭକ୍ତ, ଯଥା ୧—ମୌଳିକ କାଳ ବା Radical Form, ୨—କୃଦନ୍ତକାଳ ବା Participle Form କୁହାଯାଇଥାଏ। ଉଦାହରଣ ସ୍ୱରୂପ—ମୁଁ ଖେଳେ, ତୁ କର ଇତ୍ୟାଦି ମୌଳିକ କାଳ। 'ମୁଁ ଖେଳିବି', 'ସେ ଖେଳନ୍ତା' ଏଗୁଡ଼ିକ କୃଦନ୍ତ କ୍ରିୟାପଦ, କାରଣ ଓଡ଼ିଆରେ ଅତୀତସୂଚକ 'ଲ', ଭବିଷ୍ୟତ ସୂଚକ 'ବ', ସର୍ତ୍ତସୂଚକ 'ନ୍ତ', ପ୍ରତ୍ୟୟଗୁଡ଼ିକ ସଂସ୍କୃତ ପ୍ରାକୃତ ଭାଷା କୃଦନ୍ତ ପଦ ଗୁଡ଼ିକରୁ ଗୃହୀତ। ଓଡ଼ିଆ 'ଲ' ପ୍ରତ୍ୟୟ ସଂସ୍କୃତ ନିଷ୍ଠାପ୍ରତ୍ୟୟ 'ତ' କିମ୍ବା 'କୃତ' କିମ୍ବା ପ୍ରାକୃତ 'ଇଲ୍ଲ'ରୁ ନିଷ୍ପନ୍ନ ହୋଇଛି। ଭବିଷ୍ୟତ ପ୍ରତ୍ୟୟ 'ବ' ସଂସ୍କୃତ 'ତବ୍ୟ'

ପ୍ରତ୍ୟୟରୁ ଆସିଛି । ସର୍ତ୍ତମୂଳକ ପ୍ରତ୍ୟୟ 'ନ୍ତ' ସଂସ୍କୃତ 'ଶତୃ' ପ୍ରତ୍ୟୟରୁ ଗୃହୀତ ।

## ଓଡ଼ିଆ କ୍ରିୟାର ବିବିଧ ରୂପ :—

୧—ଣିଜନ୍ତ ବା ପ୍ରଯୋଜକ କ୍ରିୟା Causative)—ଧାତୁ ଉତ୍ତାରେ 'ଆ' ପ୍ରତ୍ୟୟ ଯୋଗ ହୋଇ ଏହି କ୍ରିୟ ପଦ ନିଷ୍ପନ୍ନ କରାଯାଏ ! ଯଥା—କରେ>କରାଏ । କଲ>କରାଇଲ । ଅନେକ କ୍ଷେତ୍ରରେ ଏହି 'ଆ' ପରିବର୍ତ୍ତିତ ହୋଇ 'ଏ' ହୁଏ, ଯଥା—କରାଇଲ>କରେଇଲ । ପୁନଶ୍ଚ ଅନେକ କ୍ଷେତ୍ରରେ 'ଣିଜନ୍ତ' ପ୍ରତ୍ୟୟ ଯୋଗରେ ମୂଳଧାତୁର ରୂପ ବଦଳିଯାଏ, ଯଥା—ଖାଏ>ଖୁଆଏ, ଶୋଇଲ>ଶୁଆଇଲ ।

୨—ଅସମାପିକା—ଓଡ଼ିଆ ଅସମାପିକା କ୍ରିୟାଧାତୁ ଉତ୍ତରେ 'ଇ' ପ୍ରତ୍ୟୟ ଲାଗି ପଦ ନିଷ୍ପନ୍ନ କରାଯାଏ । ଯଥା—କର>କରି । ପ୍ରାଚୀନ ସାହିତ୍ୟରେ ଏହି ଅର୍ଥରେ 'ଇଣ' ପ୍ରତ୍ୟୟ ଦେଖାଯାଏ ।

୩—କ୍ରିୟାର୍ଥ କ୍ରିୟା—ଧାତୁ ଉତ୍ତରେ 'ଇବାକୁ' ଯୋଗ କରି ଏହି ରୂପ ଗଠିତ ହୁଏ, ଯଥା—କର୍>କରିବାକୁ । ବାଲେଶ୍ୱର ଅଞ୍ଚଳରେ ଏହି ସ୍ଥଳରେ 'ତେ' ପ୍ରତ୍ୟୟ ହୁଏ, ଯଥା—କରିତେ ।

୪—କ୍ରିୟା ବିଶେଷ୍ୟ (Verbal noun)—ସାଧାରଣତଃ ଧାତୁ ଉତ୍ତରେ 'ଇବା' ଯୋଗରେ ଗଠିତ ହୁଏ, ଯଥା—ଖେଳ>ଖେଳିବା, ମର>ମରିବା, ଏହାବ୍ୟତୀତ 'ଆ' ପ୍ରତ୍ୟୟ ମଧ୍ୟ ହୁଏ; ଯଥା—ଖା>ଖିଆ, ଶୋ>ଶୁଆ, ।

୫—କ୍ରିୟାତ୍ମକ ବିଶେଷଣ (Participle)—ବର୍ତ୍ତମାନ-କାଳିକ 'ନ୍ତ' ବା 'ନ୍ତା' ପ୍ରତ୍ୟୟ ଯୋଗରେ ଏହି ରୂପ ଗଠିତ ହୁଏ, ଯଥା—ଉଡ଼ନ୍ତା ଚଢ଼େଇ, ଫଳନ୍ତ ଗଛ ।

ସେହିପରି ଅତୀତକାଳିକ 'ଲ' ବା 'ଆ' ପ୍ରତ୍ୟୟ ଯୋଗରେ ମଧ୍ୟ ଏହି ରୂପ ହୁଏ, ଯଥା—ମଲମାଛ, ଖାଇଲଭାତ, ଭଡ଼ାଘର, ଶୁଖିଲାକାଠ ।

ଭବିଷ୍ୟତକାଳିକ 'ଇବା' ପ୍ରତ୍ୟୟ ଯୋଗ ହୋଇ ଏହି ଧାତୁ ନିଷ୍ପନ୍ନ ହୁଏ, ଯଥା—କରିବା କାମ, ଯିବାବାଟ ଇତ୍ୟାଦି ।

୬—ଯୌଗିକ କ୍ରିୟା (Compound verb)—ସାଧାରଣ କ୍ରିୟାର ଅର୍ଥ ବିସ୍ତାର, ବିକାଶ ଓ ପରିସ୍ଫୁଟନ ପାଇଁ ଗୋଟିଏ କ୍ରିୟା ସହିତ ଅନ୍ୟ ଏକ କ୍ରିୟା ସଂଯୁକ୍ତ କରାଯାଏ । ଯଥା—ବସି ପଡ଼ିଲା, ଉଠିଗଲା, ଡେଇଁ ପଡ଼ିଲା, ଫିଙ୍ଗି ଦେଲା ଇତ୍ୟାଦି ବହୁ ଯୌଗିକ କ୍ରିୟା ଓଡ଼ିଆରେ ଦେଖାଯାଏ ।

୭—ଓଡ଼ିଆରେ ତିନୋଟି ବାଚ୍ୟ ଅଛି । ଯଥା—କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ଭାବବାଚ୍ୟ । ଦୃଷ୍ଟାନ୍ତ—ମୁଁ ପାଣି ଢାଳିଲି, ମୋ ଦ୍ୱାରା ପାଣି ଢଳା ହେଲା ଓ ପାଣି ଢାଳିଗଲା ।

୮—'ଣି' ପ୍ରତ୍ୟୟ ଯୋଗ କଲେ ଓଡ଼ିଆ କ୍ରିୟାରେ ବିଶେଷ ଭାବ ପ୍ରକଟିତ ହୁଏ । ଯଥା—

(କ) ପରିସମାପ୍ତି ଅର୍ଥରେ—ସେ ଗଲାଣି

(ଖ) ସମ୍ଭାବନା ଅର୍ଥରେ—ସେ ଯିବଣି ।

୯—ନିଷେଧାତ୍ମକ କ୍ରିୟା—(Negative verb)—'ନ' ପୂର୍ବ ପ୍ରତ୍ୟୟ ଯୋଗେ କିମ୍ବା 'ନାହିଁ' ପରପ୍ରତ୍ୟୟ ଯୋଗେ ଏହା ଗଠିତ ହୁଏ । ଯଥା—ତୁ ନକର, ତୁ କରନାହିଁ । ସେ କରୁ ନଥିଲା ।

---

## ଓଡ଼ିଆ ଶବ୍ଦ ଭଣ୍ଡାର (Oriya Vocabulary)

ଓଡ଼ିଆ ଶବ୍ଦଭଣ୍ଡାର ଚାରିଭାଗରେ ବିଭକ୍ତ, ଯଥା—ତତ୍ସମ, ତଦ୍‌ଭବ, ଦେଶଜ ଓ ବୈଦେଶିକ ।

ତତ୍ସମ :—ସଂସ୍କୃତ ଭାଷାର ଅନେକ ଶବ୍ଦ ଅବିକୃତ ଭାବରେ ଓଡ଼ିଆରେ ବ୍ୟବହୃତ ହେଉଅଛି । ସେଗୁଡ଼ିକୁ ତତ୍ସମଶବ୍ଦ କୁହାଯାଏ ଯଥା—ନଦୀ, ଅରଣ୍ୟ, ହସ୍ତୀ, କ୍ଷୁଦ୍ର, ସୂର୍ଯ୍ୟ, ବିବାହ, ପ୍ରସ୍ଥାନ, ପରିଧାନ, ଲତା, ମସ୍ତକ, ପ୍ରାଚୀନ, ଅଟ୍ଟାଳିକା, ବଧ, ଦ୍ରୁମ, କୃତଜ୍ଞ, ନିସ୍ୱାମକ, ତପସ୍ୱୀ, ଶିକ୍ଷା, ପ୍ରସ୍ତାବ, ଗହ୍ୱର, ଜାଗ୍ରତ, ମିତ୍ର, ଜାଜ୍ୱଲ୍ୟମାନ ଇତ୍ୟାଦି ।

**ତଦ୍‌ଭବ** :—ଅନେକ ସଂସ୍କୃତଶବ୍ଦ କାଳକ୍ରମେ ରୂପାନ୍ତରିତ ହୋଇ ଓଡ଼ିଆରେ ପ୍ରଚଳିତ । ଏମାନଙ୍କୁ ତଦ୍‌ଭବଶବ୍ଦ କୁହାଯାଏ । ନିମ୍ନରେ ତା'ର ଦୃଷ୍ଟାନ୍ତ ଦିଆଗଲା ।—

| ସଂସ୍କୃତ | ଓଡ଼ିଆ | ସଂସ୍କୃତ | ଓଡ଼ିଆ |
|---|---|---|---|
| ନଦୀ | ନଈ | ମୃଗ | ମିରିଗ |
| ଗ୍ରାହକ | ଗରାଖ | ବତ୍ସତରୀ | ବାଛୁରୀ |
| ପୁଷ୍କରିଣୀ | ପୋଖରୀ | ଘୃତ | ଘିଅ |
| ନକୁଳ | ନେଉଳ | କର୍ଣ୍ଣ | କାନ |
| ସର୍ପ | ସାପ | ଦନ୍ତ | ଦାନ୍ତ |
| | | ବୃଦ୍ଧ | ବୁଢ଼ା |

**ଦେଶଜ ଶବ୍ଦ**:—ଓଡ଼ିଆରେ ବ୍ୟବହୃତ ହେଉଥିବା କେତେକଶବ୍ଦ ସଂସ୍କୃତ ଓ ପ୍ରାକୃତରୁ ସୃଷ୍ଟ ନୁହନ୍ତି । ଏଗୁଡ଼ିକ କାଳକ୍ରମେ ସେହି ଅଞ୍ଚଳର ଦେଶବାସୀଙ୍କଦ୍ୱାରା ସୃଷ୍ଟି ହୋଇଥିବା ସମ୍ଭବ । ଏହି ଶବ୍ଦ ଗୁଡ଼ିକର ଉତ୍ପତ୍ତି ଜଣା ପଡ଼ୁନାହିଁ । ଏ ପ୍ରକାର ଶବ୍ଦଗୁଡ଼ିକୁ ଦେଶଜଶବ୍ଦ କୁହାଯାଏ । ଉଦାହରଣ ସ୍ୱରୂପ—ପିଲା, କୁଠା, କଣ୍ଢେଇ, ଖାଣ୍ଟି, ଡଙ୍ଗା, ଢେଲା, ଧୋକଡ଼, ଡଗର, ମଲାଟ, ଚୋଲା, ବାଖର, ଚେଙ୍ଗା, ଚୋଡ଼କା, ଗାଡଆଳ, କୋଚଡ଼ା, ଟେଣ୍ଡା, ଥୋଡପାହାର, ଗାଲୁ ଗୁମ, ଧଇଁସଇଁ, ଉଉଳ ଇତ୍ୟାଦି ।

**ବୈଦେଶିକ ଶବ୍ଦ**:—କାଳକ୍ରମେ ଭାରତର ଅନ୍ୟାନ୍ୟ ପ୍ରଦେଶର ଅଧିବାସୀଙ୍କ ସଂସର୍ଗରେ ଓଡ଼ିଶାର ଅଧିବାସୀମାନେ ଆସିବା ଫଳରେ ଅନ୍ୟ ଅଞ୍ଚଳର ଭାଷାର ପ୍ରଭାବ ଓଡ଼ିଆ ଉପରେ ପଡ଼ିଲା । ଓଡ଼ିଆ ଭାଷାରେ ବହୁ ନୂତନ ଶବ୍ଦ ପ୍ରଚଳିତ ହେଲା । ଏହି ଶବ୍ଦ ଗୁଡିକୁ ଗ୍ରହଣ ବା ପ୍ରଭାବ ଦୃଷ୍ଟିରୁ ବିଭକ୍ତ କରାଯାଇ ପାରେ । ଯଥା—

(କ) ଅଣଆର୍ଯ୍ୟେତର ଭାରତୀୟ ଭାଷାରୁ ଗ୍ରହଣ:—ଆର୍ଯ୍ୟେତର ଭାଷା କହିଲେ ସାଧାରଣତଃ ଦ୍ରାବିଡ଼, ତେଲୁଗୁ, ତାମିଲ, ମୁଣ୍ଡା କୋଲ୍ଲ ପ୍ରଭୃତି ଭାଷାକୁ ବୁଝାଯାଏ । ଏହି ସବୁ ଭାଷାରୁ ବହୁଶବ୍ଦ ଓଡ଼ିଆ ଶବ୍ଦ ଭଣ୍ଡାରକୁ ବୃଦ୍ଧି କରିଛି । ଉଦାହରଣ ସ୍ୱରୂପ—ମର୍କଟ କୁକୁର, ଚିନା, କାକୁଡ଼ି, କାତ, ପାହାଡ, ଅଠା, ବାଟି, କୁଆ, ଫଳ, ବଷା, ଗୌଣୀ ଇତ୍ୟାଦି ।

(ଖ) ଯାବନିକ ଭାଷାରୁ ଗ୍ରହଣ :—ଯାବନିକଭାଷା କହିଲେ ତାହା ଆରବୀ, ପାର୍ସୀ ତୁର୍କୀ ପ୍ରଭୃତିକୁ ବୁଝାଏ । ଆରବୀଶବ୍ଦ ହେଲା —କିତାବ, ଫିକର, କାଇଦା, ତରଫ, କଦର, କସ୍ରମତ, ଦମାକ,

ଜମିଦାର, ଜବାବ, ଜରି, ହରଜନ୍ତ, କାଲ୍ଲା, କଲ୍, ଇତ୍ୟାଦି ପାରସୀ ଶବ୍ଦ ହେଲ—ବେହୋସ, ନାଗ୍ଦର, ଗୁମାସ୍ତା, ମାଲିକ, କନାର, ଖାତିର, ବରାବର, ଜାଗା, ଅନ୍ଦାଜ, ପସନ୍ଦ, ଗୁବୁଜ, ନାଲସ, ହୁସିଆର, ତଲାସ, ଜାହଜ, ଜୋର, ତିଆର ଇତ୍ୟାଦି ।

(ଗ) ୟୁରୋପୀୟ ଭାଷାରୁ ଗ୍ରହଣ :—ଯଥା—ଅର୍ଦ୍ଦଳୀ—Orderly, Table—ଟେବୁଲ୍; ଡ଼ାକ୍ତର—Doctor; ପୁଲିସ—Police, ଟିକେଟ—Ticket, ହାସପାତାଲ—Hospital, ମାଷ୍ଟର—Master, ବାକ୍ସ—Box, ଆରାମ ଚେୟାର—Arm Chair.

ଆହୃତ ବିଦେଶୀ ଶବ୍ଦର କେତୋଟି ଧାରା :—୧—ମୂଳ ଶବ୍ଦ ଓ ଅର୍ଥ ଅବିକଳ ଭାବରେ ଗୃହୀତ, ୨—ମୂଳଶବ୍ଦ ଗୃହୀତ ହେଲେ ଅର୍ଥ ପରିବର୍ତ୍ତିତ ବା ରୂପାନ୍ତରିତ ହୁଏ, ୩—ଅର୍ଥ ରୂପାନ୍ତରିତ ହେଲେ ମଧ୍ୟ ଶବ୍ଦର ରୂପାନ୍ତରିତ ହୁଏ ।

## ଓଡ଼ିଆ ଉପଭାଷା ( Oriya Dialect )

କୌଣସି ଭାଷାର ଅନ୍ତର୍ଗତ ଗୋଷ୍ଠୀ ଗୋଷ୍ଠୀ ଦଳ ବା ଅଞ୍ଚଳ ବିଶେଷରେ ପ୍ରଚଳିତ ରୂପାନ୍ତରକୁ ଉପଭାଷା କୁହାଯାଏ । ପ୍ରତ୍ୟେକ ଭାଷାର ପ୍ରାନ୍ତୀୟ ପ୍ରଦେଶମାନଙ୍କରେ ସାଧାରଣତଃ ଅନ୍ୟଭାଷା-ଭାଷୀଙ୍କ ସଂସ୍ପର୍ଶରେ ଉପଭାଷା ଗଠିତ ହୁଏ । ଉପନିବେଶ ସ୍ଥାପନ କିମ୍ବା ପ୍ରାକୃତିକ କାରଣରୁ ଭୂଭାଗ ବିଚ୍ଛିନ୍ନ ହେଲେ ଉପଭାଷା ସୃଷ୍ଟି ହୁଏ । ଜାତିଗତ, ଧର୍ମଗତ ବା ଏକ ସମ୍ପ୍ରଦାୟଭୁକ୍ତ ଭିନ୍ନ ଭିନ୍ନ ଗୋଷ୍ଠୀ ମଧ୍ୟରେ ଭାଷାଗତ ବୈଶିଷ୍ଟ୍ୟ ପ୍ରକାଶ ପାଏ । ଉଦାହରଣ

ସ୍ୱରୂପ—ଓଡ଼ିଶାରେ ବ୍ରାହ୍ମଣ, କରଣ ଓ ହରିଜନ ପ୍ରଭୃତି ଭିନ୍ନ ଭିନ୍ନ ଜାତିଆଣ ଗୋଷ୍ଠୀ ମଧ୍ୟରେ ସ୍ୱାତନ୍ତ୍ର୍ୟ ଦେଖାଯାଏ । ସେହିପରି ଅଞ୍ଚଳ ଭେଦରେ ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର ଓ ପୂର୍ବତନ ଗଡ଼ଜାତ ଭାଷାରେ ଆଞ୍ଚଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଭାରତରେ ଭାଷା ତୁଳନାରେ ଉପଭାଷା ସଂଖ୍ୟା ବହୁ ପରିମାଣରେ ବେଶୀ । ଗ୍ରୀୟରସନ୍ ଭାରତୀୟଭାଷା ସର୍ଭେ କରି ଦେଖାଇଛନ୍ତି ଯେ ଆମ ଦେଶର ମୋଟ ଭାଷା ସଂଖ୍ୟା ୧୭୯ ଓ ଉପଭାଷା ସଂଖ୍ୟା ୫୪୪ । ପ୍ରତ୍ୟେକ ଭାଷାରେ ଏକାଧିକ ଉପଭାଷା ରହିଛି ।

ଉପଭାଷା ମୁଖ୍ୟତଃ କଥିତ ଭାଷା । ଏଥିରେ ସ୍ୱତନ୍ତ୍ର ଲିପି ନଥାଏ । ଲିଖିତ ସାହିତ୍ୟ, ବ୍ୟାକରଣ ଓ ଅଭିଧାନ ଏଥିରେ ଦେଖାଯାଏନା । ସାହିତ୍ୟ ସୃଷ୍ଟି ଓ ବ୍ୟାକରଣ ଲେଖାହେଲେ ଉପଭାଷା, ଭାଷାପରି ସ୍ୱାତନ୍ତ୍ର୍ୟ ଲାଭ କରେ । ଉପଭାଷାର ଆଉ ଏକ ଲକ୍ଷଣ, ଏଥିରେ ସାର୍ବଜନୀନ ରୂପ ଦେଖାଯାଏ ନାହିଁ । ଏଥିର ଆଞ୍ଚଳିକତା ନିୟତ ପରିବର୍ତ୍ତନଶୀଳ । ଏହାର ଆଉ ଏକ ଲକ୍ଷଣ ଯେ ମୂଳ ଭାଷାଠାରୁ ଏହା ସ୍ୱତନ୍ତ୍ର ହେଲେହେଁ ନାନାଭାବରେ ତା ସହିତ ସମ୍ବନ୍ଧାନ୍ୱିତ । କେତେକ ଔପନ୍ୟାସିକ ଶବ୍ଦ, ପଦଗଠନ-ବିଧି ଓ ଧ୍ୱନି ତତ୍ତ୍ୱରେ ସ୍ୱତନ୍ତ୍ରତା ହେତୁ ଏହା ମୂଳ-ଭାଷାଠାରୁ ପୃଥକ ।

ଓଡ଼ିଶାରେ ଦୁଇଟି ପ୍ରଧାନ ଉପଭାଷା ଅଛି । ସମ୍ବଲପୁରୀ ଉପଭାଷା ଓ କୋରାପୁଟ ଦେଶୀୟାଭାଷା । ଗ୍ରୀୟରସନ ସାହେବ କୋରାପୁଟର 'ଭତ୍ରୀ' ଭାଷାକୁ ଓଡ଼ିଶାର ଏକମାତ୍ର ଉପଭାଷା ବୋଲି ଉଲ୍ଲେଖ କରିଛନ୍ତି । ଏହି ଭତ୍ରୀଭାଷା ଦେଶୀୟା ଭାଷାର ଅନ୍ତର୍ଗତ । ଏହି ଦୁଇ ଉପଭାଷାର ଧ୍ୱନିତତ୍ତ୍ୱ, ପଦ ଗଠନ ବିଧି, କ୍ରିୟାବିଧି,

ଶବ୍ଦଭଣ୍ଡାରରେ ବହୁ ପାର୍ଥକ୍ୟ ମୂଳଭାଷାଠାରୁ ଦେଖାଯାଏ । ଏଥିରେ ପ୍ରଚୁର ଲୋକସାହିତ୍ୟ ସୃଷ୍ଟି ହୋଇଛି । ଛତିଶଗଡ଼ ଭାଷାର ସମ୍ମିଶ୍ରଣରେ ସମ୍ବଲପୁରୀ ଉପଭାଷା ସୃଷ୍ଟି ହୋଇଛି ।

ଓଡ଼ିଶାର ବିଚ୍ଛିନ୍ନାଞ୍ଚଳମାନେ ଯଥା — ମେଦିନୀପୁର, ସିଂହଭୂମି, ବସ୍ତର, ଗଞ୍ଜାମ, ସିଂଘାକୁଲମ୍ ଅଞ୍ଚଳରେ ସ୍ୱତନ୍ତ୍ର ଉପଭାଷାମାନ ସୃଷ୍ଟି ହୋଇଛି । ଏହିସବୁ ବିଚାର କଲେ ଗ୍ରୀୟର୍ସନଙ୍କ ମନ୍ତବ୍ୟ "Oriya is remarkably free From dialectcal variations" କଥାଟିର ଯଥାର୍ଥତା ସମ୍ପର୍କରେ ସନ୍ଦେହ ଜାତହୁଏ ।

## ଆଧୁନିକ ଭାରତୀୟ ଭାଷାମାନଙ୍କସହ ଓଡ଼ିଆ ଭାଷାର ସଂପର୍କ

**ମରହଟ୍ଟା ଭାଷା ସହିତ ଓଡ଼ିଆ ଭାଷାର ସମ୍ପର୍କ :—** ମରହଟ୍ଟା ପ୍ରାକୃତ ଓ ଓଡ଼ିଆ ପ୍ରାକୃତ ମଧ୍ୟରେ ସମ୍ବନ୍ଧ ନାହିଁ । ଓଡ଼ିଆ Outer Group ମାତ୍ର ମରହଟ୍ଟୀ Inner Group ଭାବେ ଅଭିହିତ । ତଥାପି ଏହି ଦୁଇଟି ଭାଷା ମଧ୍ୟରେ ସମ୍ପର୍କ ରହିଛି । (କ) ଅସମାପିକାରେ 'ଣ' ପ୍ରୟୋଗରେ ମରହଟ୍ଟା ଭାଷାସହିତ ଓଡ଼ିଆ-ଭାଷାର ସାମଞ୍ଜସ୍ୟ ପରିଦୃଷ୍ଟହୁଏ । ଆମର ପ୍ରାଚୀନ ଓଡ଼ିଆ ଭାଷାବଇ-ବରେ ବ୍ୟବହୃତ 'ଯାଇଣ' 'ଖାଇଣ' 'କରିଣ' ଇତ୍ୟାଦି ମରହଟ୍ଟା ଭାଷାରେ ମଧ୍ୟ ଦେଖାଯାଏ । (ଖ) ଓଡ଼ିଆ ଭାଷାର ଶେଷ ଅକ୍ଷରରେ ହଲନ୍ତ ( ୍ ) ରହେ ନାହିଁ । ମାତ୍ର ବଙ୍ଗଳା ପ୍ରଭୃତିରେ 'ଖାଇଛେନ୍', ଗିୟେଛେନ୍, ନିଏଛେନ୍, ପ୍ରଭୃତିର ପ୍ରୟୋଗ ଦୃଷ୍ଟିଗୋଚର ହୁଏ । ପଦାନ୍ତରେ ସ୍ୱର-ବର୍ଣ୍ଣର ଅବସ୍ଥିତି ଓଡ଼ିଆରେ ଦେଖାଗଲାପରେ

ମରାଠୀ ଭାଷାରେ ମଧ୍ୟ ତଦ୍ରୂପ ସାଦୃଶ୍ୟ ରହିଛି । (ଗ) ଓଡ଼ିଆ ଭାଷାରେ ବ୍ୟବହୃତ 'ଳ' ଧ୍ୱନି ମରାଠୀ ଭାଷାରେ ଦେଖାଯାଏ । (ଘ) ଅତୀତ କାଳରେ 'ଲ' ପ୍ରୟୋଗ, ଯଥା—କରିଲି, ଖାଇଲି ପ୍ରଭୃତି ଓଡ଼ିଆ ଭାଷାରେ ଦେଖାଗଲା ପରି ମରାଠୀ ଭାଷାରେ ମଧ୍ୟ ରହିଛି । ଉଭୟ ଭାଷାରେ 'ଲ' ପ୍ରୟୋଗ ଅତୀତ କାଳର ନିର୍ଦ୍ଦେଶକ ରୂପେ ବ୍ୟବହୃତ ହୁଏ । (ଙ) ଦୂରନିର୍ଦ୍ଦେଶକ ଉଭୟ ଓଡ଼ିଆ ଓ ମରାଠୀ ଭାଷାରେ ପରିଲକ୍ଷିତ ହୁଏ ନାହିଁ । (ଚ) ଓଡ଼ିଆର ୪ର୍ଥୀ ବିଭକ୍ତିରେ ଗୋଟିଏ ପ୍ରତ୍ୟୟ (ଅନୁସର୍ଗୀୟ) ବ୍ୟବହୃତ ହୁଏ । ଯଥା—ଲାଗି, ପାଇଁ ।

ମୋ ଲାଗି ବହି ଆଣିବ
ମୋ ପାଇଁ ପାନ ଆଣିବ ।

ମରାଠୀ ଭାଷାରେ ଏହା 'ଲା' ପ୍ରତ୍ୟୟ ଭାବରେ ବ୍ୟବହୃତ ହୁଏ ।

**ଛତିଶ ଗଡ଼ ଭାଷା ସହିତ ଓଡ଼ିଆର ସମ୍ପର୍କ**—ଓଡ଼ିଆ ବହୁବଚନର ପ୍ରୟୋଗ 'ମାନେ' ହୁଏ । ଯଥା—

ସେ—ସେମାନେ
ପିଲା—ପିଲାମାନେ ।

ଛତିଶଗଡ଼ ଭାଷାରେ ଏହି ସାମଞ୍ଜସ୍ୟ ଦେଖାଯାଏ । ଏହି ଭାଷାର ବହୁବଚନର ପ୍ରୟୋଗ 'ମନ' ହୁଏ ।

**ଆସାମିୟା ଭାଷା ସହିତ ଓଡ଼ିଆର ସମ୍ପର୍କ**—ଓଡ଼ିଆ ତୃତୀୟ ପୁରୁଷ ବହୁବଚନ ସାମାନ୍ୟ ବର୍ତ୍ତମାନ କାଳରେ 'ନ୍ତି' ପ୍ରତ୍ୟୟ ହୁଏ । ଆସାମୀୟା ଭାଷାରେ ଅବିକଳ ଏହି ପ୍ରତ୍ୟୟ ଦେଖାଯାଏ । ଯଥା—

(ଓଡ଼ିଆ) ସେ କରନ୍ତି, (ଆସାମୀୟା) ସେ କରନ୍ତ ।

**ମୈଥିଳୀ ଭାଷାସହ ସମ୍ପର୍କ**—ଏହି ଭାଷାସହ ଓଡ଼ିଆର କେବଳ ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ମାତ୍ର କେତେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ମାତ୍ର ଶବ୍ଦରୂପ ଚେନାଲେ ନାହିଁ ପର ବିଶେଷ କରୁ ସାଦୃଶ୍ୟ ପରିଦୃଷ୍ଟ ହୁଏ ନାହିଁ ।

**ଅବଧି ଭାଷାସହ ସମ୍ପର୍କ**—ଅବଧି 'ସ' ସହିତ ଓଡ଼ିଆ 'ସ' ର ସାମଞ୍ଜସ୍ୟ ଅଛି । ଆମର 'ଶ' ଓ 'ଷ' ଦୁଇଟି ବ୍ୟବହୃତ ହେଉଥିଲେ ମଧ୍ୟ ଏହାର ବୈଶିଷ୍ଟ୍ୟ ନାହିଁ । 'ସ'ର ଉଚ୍ଚାରଣରେ ସମ୍ୟକ୍‌ ଭାବରେ ଯେ ଦୁଇଟି ନିଜର ବୈଶିଷ୍ଟ୍ୟ ହରାଇଥାନ୍ତି ।

**ଆର୍ଯ୍ୟେତର ଭାଷାମାନଙ୍କ ସହ ଓଡ଼ିଆର ସମ୍ପର୍କ**—ଆର୍ଯ୍ୟେତର ଭାଷାମାନଙ୍କ ମଧ୍ୟରେ ଦ୍ରାବିଡ଼ ଓ ତେଲୁଗୁ ଭାଷାସହ ଓଡ଼ିଆର ଯୋଗାଯୋଗ ବେଶୀ ପରିମାଣରେ ପରିଲକ୍ଷିତ ହୁଏ । ଆର୍ଯ୍ୟମାନେ ଓଡ଼ିଆ ମାଟିରେ ପାଦଦେବା ପୂର୍ବରୁ ତାହା ଦ୍ରାବିଡ଼ ଅଧ୍ୟୁଷିତ ଅଞ୍ଚଳଥିଲା । ପଣ୍ଡିତ ନୀଳକଣ୍ଠ ଦାସ 'ନବ ପରିଣାମ' ପୁସ୍ତକରେ ସେ ସମ୍ପୃକ୍ତ ସଭ୍ୟତାକୁ ଶବର ସଭ୍ୟତା ନାମରେ ନାମିତ କରିଛନ୍ତି । ବହୁକାଳଧରି ଶବରମାନେ ଓଡ଼ିଶାରେ ବସବାସ କରୁଥିଲେ । ଗଙ୍ଗବଂଶ ରାଜତ୍ୱ କାଳରେ ଅନ୍ଧ୍ର ଓ ଓଡ଼ିଶା ମଧ୍ୟରେ ରାଜନୈତିକ ସମ୍ପର୍କ ସ୍ଥାପିତ ହୋଇଥିଲା । ଫଳରେ ଆନ୍ଧ୍ରର ତେଲୁଗୁ ଭାଷା ସହିତ ଓଡ଼ିଆ ଭାଷାର କେତେକ ସାମ୍ୟ ଥିବାର ଲକ୍ଷ୍ୟ କରାଯାଏ । ଦ୍ରାବିଡ଼ଭାଷା ସଂସ୍କୃତ ଭାଷାକୁ ପ୍ରଭାବିତ କରିପାରି ଥିବାରୁ ଏହିଭାଷା ଓଡ଼ିଆକୁ ପ୍ରଭାବିତ କରିବା ସ୍ୱାଭାବିକ । କେତେକ ଶିଳାଲେଖରେ ଓଡ଼ିଆ ଓ ତେଲୁଗୁ ଭାଷା ଉଭୟର ପ୍ରୟୋଗ ଦେଖାଯାଏ । ଭୁବନେଶ୍ୱରର ଦ୍ୱିଭାଷିକ ଶିଳାଲେଖ ଏହାର

ଉଦାହରଣ । ବର୍ତ୍ତମାନସୁଦ୍ଧା ଗଞ୍ଜାମ ଜିଲାର ଅଧିବାସୀମାନେ ତେଲୁଗୁଭାଷା ଦ୍ୱାରା ପ୍ରଭାବିତ । ଓଡ଼ିଶାର ସମୁଦ୍ର କୂଳବର୍ତ୍ତୀ ନୋଳିଆଗଣ ମଧ୍ୟ ଏହି ଭାଷାଦ୍ୱାରା ପ୍ରଭାବିତ ।

ଓଡ଼ିଆଭାଷା ଓ ଧ୍ୱନି ବହୁପରିମାଣରେ ଦ୍ରାବିଡ଼ାନୁସାରୀ । କେତେକ ଲିପିତତ୍ତ୍ୱବିତ୍‌ମାନଙ୍କ ମତରେ ଓଡ଼ିଆ ଲିପିର ଗୋଲାକୃତି ଦ୍ରାବିଡ଼ ଲିପି ଅନୁସାରୀ । ଉଭୟଙ୍କି ଭାଷାରେ କେତେକ ସାମଞ୍ଜସ୍ୟ ହେଲା—

(କ) ତାମିଲରେ କୌଣସି ଶବ୍ଦର ଶେଷରେ 'ଆ'କାର ଥିଲେ ତାହା 'ଏ'କାରରେ ପରିଣତ ହୁଏ । ଓଡ଼ିଆ ଭାଷାରେ ମଧ୍ୟ ତାହା ହୁଏ ।

ଯଥା—ଜଗ, ଜଗନ୍ନାଥ ବା ଜଗା; ସ୍ନେହରେ ଜଗାଇ ବା ଜଗେଇ ହୁଏ ।

(ଖ) 'ଉ' ପରେ ଯେକୌଣସି ବର୍ଣ୍ଣ ଥିଲେ ସୁଦ୍ଧା ତହିଁରେ 'ଇ', 'ଉ' ବା 'ଏ'କାର ହୋଇ ପାରେ ନାହିଁ । ଏହି ବୈଶିଷ୍ଟ୍ୟ ଉଭୟ ଦ୍ରାବିଡ଼ ଓ ଓଡିଆ ଭାଷାରେ ଦେଖାଯାଏ । ଓଡ଼ିଆରେ—

ଉପବାସ—ଓପାସ, ଉଷ୍ଠ—ଓଠ ହୁଏ । ତେଲୁଗୁ, ତାମିଲରେ ମଧ୍ୟ ଏହିପରି ହୁଏ ।

(ଗ) ଓଡିଆ 'ମର୍କଟ' ଶବ୍ଦ ତାମିଲରୁ ଗୃହୀତ ବୋଲି ଡଃ କୁଞ୍ଜବିହାରୀ ତ୍ରିପାଠୀ ମତ ଦିଅନ୍ତି । ତାଙ୍କ ମତାନୁସାରେ ତାମିଲରେ 'ମର୍' ଶବ୍ଦ ଅର୍ଥ 'ଗଛ' ଏବଂ 'କାଟ' ଅର୍ଥ ଯିବାକୁ ବୁଝାଏ । ଏହି ଶବ୍ଦ ଦ୍ୱୟରୁ 'ମର୍କଟ' ଆସିଛି । ସେହିପରି ତାମିଲ କୁରୁ'ରୁ ଓଡ଼ିଆ 'କୁକୁର' ଶବ୍ଦ ଆସିଛି ।

(ଘ) ଡ଼, ଣ, ଳ ଓଡ଼ିଆ ଭାଷାରେ ପ୍ରଚଳିତ । କିନ୍ତୁ ଅଧିକାଂଶ ଆର୍ଯ୍ୟ ଭାଷାରେ ର, ନ, ଲ, ହୁଏ । ଦ୍ରାବିଡ଼ ଭାଷାର ପ୍ରଭାବରେ ଓଡ଼ିଆରେ ଡ଼, ଣ, ଳ ର ପ୍ରୟୋଗ ଅଛି ।

(ଙ) ଓଡ଼ିଆ ଭାଷାରେ ବହୁ ପ୍ରଚଳିତ ପରିଚିତ ଶବ୍ଦ ତାମିଲ ଭାଷାରୁ ଗୃହୀତ, ଯଥା—ଗିନା, କାକୁଡ଼, କାତ, ପହଡ଼, ଅଣ୍ଟା, ବାଟି, କୁଞ୍ଚା, ପଳ, ବଷା, ପୌଣ୍ଠୀ ଇତ୍ୟାଦି । ପଣ୍ଡିତ ବିନାୟକ ମିଶ୍ର 'ଓଡ଼ିଆ ଭାଷାର ଇତିହାସ' ପୁସ୍ତକରେ ବହୁ ତାମିଲ ଶବ୍ଦ ଓଡ଼ିଆରେ ଗୃହୀତ ହୋଇଥିବାର ଦର୍ଶାଇଛନ୍ତି ।

———

# ଓଡ଼ିଆ ଭାଷାର ପ୍ରାଚୀନତା

ଗବେଷକମାନେ ମତ ଦିଅନ୍ତି ଯେ ବହୁ ବର୍ଷ ପୂର୍ବେ ଓଡ଼ିଶାର ଆଦିମ ଅଧିବାସୀମାନେ ଦ୍ରାବିଡ଼ ଜାତିର ଅନ୍ତର୍ଗତ ଥିଲେ ଏବଂ ଦ୍ରାବିଡ଼ ଭାଷା ମଧ୍ୟ ବ୍ୟବହାର କରୁଥିଲେ । ଦ୍ରାବିଡ଼ ଭାଷାରେ ଏକ ଚଷା ଜାତିକୁ ଉକ୍କଲ ଓ ଓଡ଼ଶୁ କୁହାଯାଏ । ତତ୍‌କାଳୀନ ସମୟରେ ଓଡ଼ିଶା ଅଞ୍ଚଳର ଅଧିବାସୀମାନେ ବିଶେଷ ଭାବରେ କୃଷି କାର୍ଯ୍ୟରେ ମନଯୋଗୀ ଥିବାରୁ ସେମାନଙ୍କୁ 'ଉକ୍‌କଲ' ଓ ଓଡ଼ଶୁ' ନାମରେ ଅଭିହିତ କରାଯାଉଥିଲା । ଏହି ଶବ୍ଦଦ୍ୱୟରୁ ଉତ୍କଳ ଓ ଓଡ୍ର ଶବ୍ଦର ଉତ୍ପତ୍ତି ଘଟିଛି, ଏହି ଉଡ୍ର ଦେଶର ଭାଷା ବର୍ତ୍ତମାନ ଓଡ଼ିଆ ନାମରେ ନାମିତ ।

ବେଦର ଭାଷାହିଁ ପ୍ରାଚୀନତମ ଆର୍ଯ୍ୟଭାଷା । ସଂସ୍କୃତ, ପାଲି, ପ୍ରାକୃତ ପ୍ରଭୃତି ଭାଷାଗୁଡ଼ିକର ବେଦ ଜନନୀ ସ୍ୱରୂପା । ବିଭିନ୍ନ ସମୟରେ ସଂସ୍କାର ମଧ୍ୟଦେଇ ଆଦ୍ୟ ଭାଷା ଗତି କରିବାରୁ ତାହା ସଂସ୍କୃତ ହେଲା । ପାଣିନୀ ବ୍ୟାକରଣ ରଚନା କରି ସଂସ୍କୃତର ପଥରୋଧ କରିଥିଲେ ଏବଂ ଏହାକୁ ସାହିତ୍ୟିକ ଭାଷାର ମାଧ୍ୟମ କରିଥିଲେ । କିନ୍ତୁ କଥିତ ଭାଷା ପୂର୍ବ ପରି ପରିବର୍ତ୍ତିତ ହେଉଥିଲା । ସେହି ପରିବର୍ତ୍ତନ ଫଳରେ ପରବର୍ତ୍ତୀ ଯୁଗରେ 'ପାଲି' ଭାଷା ସୃଷ୍ଟି ହେଲା । ଅନାର୍ଯ୍ୟମାନଙ୍କ ପ୍ରଭାବରେ ଆର୍ଯ୍ୟଭାଷା ବହୁ ପରିମାଣରେ ପରିବର୍ତ୍ତିତ ହୋଇ ପାଲି ନାମ ଧାରଣ କଲା । ଏହି ପାଲିଭାଷା ପ୍ରକୃତିଜନ ସମୂହରେ ସୃଷ୍ଟି ବୋଲି ଏହାକୁ 'ପ୍ରାକୃତ' ମଧ୍ୟ କୁହାଯାଏ । ଯେଉଁ ସମୟରେ ଆର୍ଯ୍ୟମାନେ ମଗଧରେ ଥିଲେ ସେହି ସମୟରେ ପାଲି ଭାଷାର ସୃଷ୍ଟି । ତେଣୁ, ଏହା ସେମାନଙ୍କର ଭାଷା ଥିବାରୁ ତାହା 'ମାଗଧୀ' ନାମରେ ମଧ୍ୟ କଥିତ । ଭାରତୀୟ

ଆର୍ଯ୍ୟଭାଷା ଚାରି ଭାଗରେ ବିଭକ୍ତ । ଯଥା— ମାଗଧୀ, ଅର୍ଦ୍ଧମାଗଧୀ, ମହାରାଷ୍ଟ୍ରୀ ଓ ଶୌରସେନୀ । 'ମାଗଧୀ" ମଧ୍ୟରୁ ଓଡ଼ିଆ, ବଙ୍ଗଳା ଓ ଆସାମୀୟାଁ ଭାଷାର ସୃଷ୍ଟି ହୋଇଛି । ବହୁ ସମୟବକାଶ ମଧ୍ୟ-ଦେଇ ଓଡ଼ିଆଭାଷା ଜନ୍ମାନ୍ତରର ସୋପାନରେ ପଦାର୍ପଣ କରିଛି । ତେଣୁ, ଏହାର ପ୍ରାଚୀନତାର ସଠିକ ବିବରଣୀ ପ୍ରଦାନ କରିବା କଷ୍ଟକର ।

ଭାଷା ଓ ସାହିତ୍ୟର ବିବର୍ତ୍ତନ ମୂଳରେ ଧର୍ମ ପ୍ରଚାରର ପ୍ରଭାବ ସର୍ବଥା ସ୍ୱୀକାର୍ଯ୍ୟ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଅଶୋକଙ୍କ କଳିଙ୍ଗ ବିଜୟ ଓ ଧର୍ମଗ୍ରହଣ, ଦକ୍ଷିଣ ଦେଶର ରାଜା ନାଗାର୍ଜୁନଙ୍କଠାରୁ ଉତ୍କଳ ଗଜପତିଙ୍କ ବୌଦ୍ଧଧର୍ମ ଗ୍ରହଣ ଏବଂ ଖାରବେଳଙ୍କ ସମୟରେ ମାଗଧୀ ବ୍ରାହ୍ମଣଙ୍କ ଉତ୍କଳରେ ବସତି ସ୍ଥାପନଦ୍ୱାରା ବିଭିନ୍ନ ଭାଷାର ମିଶ୍ରଣରେ ଓଡ଼ିଶାର ଉଡ୍ର-ବିଭାଷାର ସୂତ୍ରପାତ ହେଲା । ଏହା ଦ୍ୱିତୀୟ ଶତାବ୍ଦୀ ବେଳକୁ ଓଡ଼ିଶାରେ ସୁପ୍ରଚଳିତ ଥିଲା । ନାଟ୍ୟାଚାର୍ଯ୍ୟ ଭରତମୁନି (ଖ୍ରୀ୨ୟ ଶତାବ୍ଦୀ) ସ୍ୱପ୍ରଣୀତ ଗ୍ରନ୍ଥରେ ଅନ୍ୟାନ୍ୟ ଭାଷା ପରି 'ଉଡ୍ର ବିଭାଷା' ମଞ୍ଚୋପଯୋଗୀ ହୋଇଥିବା ଦର୍ଶାଇଛନ୍ତି । ବହୁ କାରଣରୁ ଉତ୍କଳ ଅଧିବାସୀମାନେ ଆର୍ଯ୍ୟମାନଙ୍କ ସଂସ୍ପର୍ଶରେ ଆସିବାରୁ ସେମାନଙ୍କ ଉଚ୍ଚାରଣ ପ୍ରଣାଳୀରେ କ୍ରମଶଃ ପରିବର୍ତ୍ତନ ଦେଖାଗଲା ଏବଂ ସେମାନଙ୍କ ଭାଷାରେ ବହୁ ତତ୍ସମ ଓ ତଦ୍ଭବ ଶବ୍ଦ ପ୍ରଚଳିତ ହେଲା । ଫଳରେ ଉଡ୍ରବିଭାଷା ଉଡ୍ର ପ୍ରାକୃତରେ ପରିଣତ ହେଲା । ଖ୍ରୀଷ୍ଟାବ୍ଦ ସପ୍ତମ ଶତାବ୍ଦୀ ବେଳକୁ ଏହାର ସ୍ୱାତନ୍ତ୍ର ସ୍ପଷ୍ଟ ପରିଲକ୍ଷିତ ହେଉଥିଲା ।

ବ୍ୟାସକୃତ ସଂସ୍କୃତ ମହାଭାରତରେ କଳିଙ୍ଗଦେଶ ଓ ଅଧିବାସୀ ମାନଙ୍କର ବହୁଳ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । ଲଳିତ ବିସ୍ତର-

ବିବରଣୀ ଅନୁସାରେ ବୁଦ୍ଧ ଜାଣିଥିବା ଚଉଷଠୀ ଲିପିମଧ୍ୟରେ ଉଡ୍ରୀ ଉଡ୍ରୀଲିପି ଅନ୍ୟତମ । ଜୈନନନ୍ଦୀସୂତ୍ରରେ ଉଡ୍ରୀଲିପିର ଉଲ୍ଲେଖ ଅଛି । ଅଶୋକ ଓ ଖାରବେଲଙ୍କ ଶିଳାଲେଖରେ ଓଡ଼୍ରଆଶବ୍ଦ ଓ ଭାଷାର ସୂଚନା ଉଦ୍ଧରଣହୁଛି ।

ପ୍ରାକୃତ ଲଙ୍କେଶ୍ୱର ବ୍ୟାକରଣରେ ଲିପିବଦ୍ଧ ଅଠରଟି ଭାଷା ମଧ୍ୟରେ ଓଡ଼ିଆ ଭାଷାର ପ୍ରୟୋଗ ଅଛି । ଚୀନପରିବ୍ରାଜକ ହୁଏନସାଙ୍କ ବିବରଣୀ ଅନୁସାରେ ସପ୍ତମ ଶତାବ୍ଦୀ ବେଳକୁ ଉତ୍କଳରେ ଏକ ସ୍ୱତନ୍ତ୍ର ଭାଷା ପ୍ରଚଳିତ ଥିଲା । ତେଣୁ, ଓଡ଼ିଆ ଭାଷା ଯେ ଏହି ସମୟକୁ ସ୍ୱତନ୍ତ୍ର ରୂପ ଧାରଣକରି ସାରିଥିଲା ଏହା ତାଙ୍କ ବିବରଣୀରୁ ଜଣାଯାଏ । ବାରଶ ଶତାବ୍ଦୀ ବେଳକୁ ଲିଖିତ ଶ୍ରୀକୃଷ୍ଣ ପଣ୍ଡିତଙ୍କ 'ପ୍ରାକୃତ ଚନ୍ଦ୍ରିକା'ରେ ସତାଇଶ ଗୋଟି ବିଭାଷା ମଧ୍ୟରେ ଉଡ୍ରବିଭାଷାର ବର୍ଣ୍ଣନା ଅଛି । ଚତୁର୍ଦ୍ଦଶ ଶତାବ୍ଦୀର ଲେଖକ ମାର୍କଣ୍ଡେୟଙ୍କ 'ପ୍ରାକୃତ ପ୍ରକାଶ'ରେ ଉଡ୍ର ପ୍ରାକୃତର ଦୃଷ୍ଟାନ୍ତ ମିଳେ । ପୁରୁଷୋତ୍ତମ ଦେବଙ୍କ 'ପ୍ରାକୃତ ଅନୁଶାସନ' ଗ୍ରନ୍ଥରେ 'ଉଡ୍ରୀ ଅପଭ୍ରଂଶ'ର ନାମୋଲ୍ଲେଖ ରହିଛି ।

ଏତଦ୍ ବ୍ୟତୀତ ସ୍ୱୀୟ ଓଡ଼ିଆ ଭାଷାର ଲିଖିତ ରେକର୍ଡ଼ ମଧ୍ୟ ରହିଛି । ସେଗୁଡ଼ିକ ମଧ୍ୟରୁ ଚର୍ଯାଗୀତିକା ନବମରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଲିଖିତ । ଏଥିରେ ଉଚ୍ଚାରଣ, ପଦବିନ୍ୟାସ, କାରକ, ବିଭକ୍ତି, ସର୍ବନାମ, କ୍ରିୟା ଓ ନିତ୍ୟବ୍ୟବହାର୍ଯ୍ୟ ପଦ ପ୍ରୟୋଗ ଦୃଷ୍ଟିରୁ ଆଧୁନିକ ଓଡ଼ିଆ ଭାଷାର ସ୍ୱରୂପ ପରିଷ୍କାର ଦେଖି ହୁଏ । ଯଥା—

''ନଗର ବାହିରେ ଡୋମ୍ବୀ ତୋହରି କୁଡ଼ିଆ'

'ଲୁଇଭଣଇ ଗୁରୁ ପୁଛିଅ ଜାଣ' ଇତ୍ୟାଦି । ବଙ୍ଗଳାର ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ନେପାଳ ଲାଇବ୍ରେରୀରୁ

ଚର୍ଯାଗୀତ ଗୁଡ଼ିକୁ ପାଇଥିଲେ । ବଙ୍ଗଳା, ଓଡ଼ିଆ, ଆସମୀୟା ପ୍ରଭୃତି ଭାଷାର ସମାଲୋଚକ-ଗବେଷକମାନେ ନିଜନିଜ ଭାଷାର ସ୍ୱରୂପ ଏହା ମଧ୍ୟରୁ ସନ୍ଧାନ କରି ବସିଥାନ୍ତି । ଏଗୁଡ଼ିକର ରଚୟିତା କାହ୍ନୁପା, ଲୁଇପା, ଶବରପା ପ୍ରଭୃତି ସିଦ୍ଧ ସହଜିଆ ସାଧକ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଉତ୍କଳୀୟ ବୋଲି ପ୍ରମାଣିତ ହୋଇଛି ।

ସହଜିଆ ବୌଦ୍ଧସାଧକମାନଙ୍କ ଚର୍ଯାଗୀତି ରଚନାର ପରବର୍ତ୍ତୀ ସମୟରେ ନାଥ ଯୋଗୀମାନଙ୍କର ରଚିତ 'ନାଥସାହିତ୍ୟ' ପ୍ରଚଳିତ ଥିବାର ଡଃ ବଂଶୀଧର ମହାନ୍ତି ପ୍ରମାଣ କରିଛନ୍ତି । ଗୋରଖ, 'ନାଥ ପନ୍ଥୀ'ଙ୍କର ଆଦିଗୁରୁ । ଏହି ନାଥ ଯୋଗୀମାନଙ୍କଦ୍ୱାରା ରଚିତ 'ସିଦ୍ଧବେଦ' 'ଅମର କୋଷ ଗୀତା' ଓ 'ସପ୍ତାଙ୍ଗଯୋଗ ଗୀତା' ପ୍ରଭୃତି କେତେଖଣ୍ଡ ପୁସ୍ତକ ରଚିତ ବୋଲି ଡଃ ମହାନ୍ତି ପ୍ରମାଣ କରିଛନ୍ତି । ଏହି ନାଥଧର୍ମର ଯୌଗିକ ସାଧନା, କାୟାସାଧନା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରଭୃତି ଧର୍ମ-ଦର୍ଶନ ପରବର୍ତ୍ତୀ କବି ସାରଳା ଓ ତାଙ୍କ ପରବର୍ତ୍ତୀ ସନ୍ଥସାହିତ୍ୟ ଓ ପଞ୍ଚସଖା ସାହିତ୍ୟକୁ ବିଶେଷ ଭାବରେ ପ୍ରଭାବିତ କରିଅଛି ।

ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷାର ସ୍ୱଚ୍ଛ ପରିପ୍ରକାଶ ଉପଲବ୍ଧି କରାଯାଏ । ଏହି ସମୟର ଶିଳାଲେଖ, ତାମ୍ର ଫଳକ ଆଦିରୁ ଏହାର ସ୍ୱାତନ୍ତ୍ର୍ୟ ଜଣାପଡ଼େ । ଡଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ଗବେଷଣା ପୁସ୍ତକ 'Evolution of Oriya Language & Script' ଗ୍ରନ୍ଥରେ ଥିବା ଉରଜମ୍ ଶିଳାଲେଖ ଖ୍ରୀ:୧୦୫୧ରେ ଉତ୍କୀର୍ଣ୍ଣ ବୋଲି ସେ ପ୍ରମାଣ କରିଛନ୍ତି । ଏହି ଶିଳାଲେଖ ଅନନ୍ତବର୍ମା ଦେବଙ୍କ ସମୟର । ଓଡ଼ିଶାର ପ୍ରଥମ ଗଙ୍ଗରାଜା ଚୋଡ଼ଗଙ୍ଗଦେବଙ୍କ ପିତାମହ ଏହାକୁ ଲେଖାଇଥିଲେ । ଏତଦ୍‌ବ୍ୟତୀତ ପଣ୍ଡିତ ସତ୍ୟନାରାୟଣ ରାଜଗୁରୁ ୧୯୫୩ ମସିହାରେ

ବାଲେଶ୍ୱରରୁ ଅବିଷ୍କୃତ ଶିଳାଲେଖକୁ ଦଶମ-ଏକାଦଶ ଶତାବ୍ଦୀର ବୋଲି ପ୍ରମାଣ କରିଛନ୍ତି । ଏଥିରେ ଅଛି—

"ଦେବନନ୍ଦି ଭଗତ କରୁଣ । ଅଛନ୍ତି ଭୋ କୁମାର ସେଣ",

ପ୍ରଥମ ଓଡ଼ିଆ ଅଭିଲେଖ 'ଉରଜମ୍' ( ଆନ୍ଧ୍ରରୁ ପ୍ରାପ୍ତ )କୁ କେତେକ ସପ୍ତମ ଶତାବ୍ଦୀରୁ ଦଶମ ଶତାବ୍ଦୀ ମଧ୍ୟରେ ଖୋଦିତ ବୋଲି କହିଥାନ୍ତି । ଏହାର ଭାଷା, ଉଦାହରଣ ସ୍ୱରୂପ—

"ଦେବ ଯଶୋଅଣଦନ କରମସ୍ଥି କରୁଣାଳେସ

ଏତଳେ ଯମନ୍ତ ଅଛଇ ପିଠଇ ସଧ କଳେସ ।"

ମୁଖ୍ୟତଃ, ସାରଳା ମହାଭାରତ ପ୍ରାଚୀନ ଓଡ଼ିଆ ଭାଷାର ପ୍ରାମାଣିକ ପରିଚୟ । ସେହି ଭାଷାସହିତ ମଧ୍ୟଯୁଗୀୟ ବା ଆଧୁନିକ ଭାଷା ତୁଳନାକଲେ ଆମେ ପ୍ରାଚୀନ ଭାଷାର ସ୍ୱରୂପ ଓ ସ୍ୱାତନ୍ତ୍ର୍ୟ ଉପଲବ୍ଧି କରୁ । ସାରଳାଦାସଙ୍କ ମହାଭାରତ, ବଳରାମଦାସଙ୍କ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ୍ ଏବଂ ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ ପ୍ରଭୃତି ପଞ୍ଚସଖାଙ୍କ ରଚନା ବଳୀରେ ପ୍ରାଚୀନ ଭାଷାର ନିଦର୍ଶନ ଭରପୂର ଭାବରେ ରହିଛି । ପ୍ରଥମୋକ୍ତ ଦୁଇ ବିଶିଷ୍ଟ କବିଙ୍କ ରଚନାରେହିଁ ପ୍ରାଚୀନ ଓଡ଼ିଆଭାଷାର ବୈଶିଷ୍ଟ୍ୟ ଅକ୍ଷୁର୍ଣ୍ଣ ଭାବରେ ନିହିତ ।

ମଧ୍ୟଯୁଗୀୟ (୧୫୫୦-୧୮୫୦) ଓଡ଼ିଆସାହିତ୍ୟ ପ୍ରତି ଦୃଷ୍ଟିଦେଇ ବିଚାରକଲେ ଦେଖାଯାଏ ଯେ ତାହା କ୍ରମେ ସଂସ୍କୃତାଭିମୁଖୀ ହୋଇଛି । ଭଞ୍ଜ, ଅଭିମନ୍ୟୁ, ଯଦୁମଣି ପ୍ରଭୃତି ପଣ୍ଡିତ-କବିମାନେ କାବ୍ୟରେ ସଂସ୍କୃତଶବ୍ଦ ବହୁପରିମାଣରେ ପ୍ରୟୋଗକରି ଭାଷାର ଶବ୍ଦ-ଭଣ୍ଡାର ମଣ୍ଡିତ କରିଛନ୍ତି ।

ଏହି ସମୟରେ ଓଡ଼ିଆଭାଷା ଅନ୍ୟ ଗୋଷ୍ଠୀରଭାଷା ସଂପର୍କରେ ଆସିଛି । ମୁସଲମାନ, ମୋଗଲ ପ୍ରଭୃତି ଶାସନ ଓଡ଼ିଶାରେ

ପ୍ରବର୍ତ୍ତିତ ହେବାରୁ ଆମ ଭାଷାରେ ବହୁ ଆରବୀ, ପାର୍ଶିଶବ୍ଦ ପ୍ରବେଶକଲା । କବିସୂର୍ଯ୍ୟ ଯଦୁମଣି ଓ ବ୍ରଜନାଥଙ୍କ ରଚନା ପାଠକଲେ ଏହି ଆହରଣ ଓ ପ୍ରଭାବର ବ୍ୟାପକ ପରିଚୟ ମିଳେ । ଏହାର ପ୍ରଧାନ କାରଣ ହେଉଛି—ଏହିସବୁ ଯାବନିକ ଭାଷା ରାଜଭାଷା ଭାବରେ ପ୍ରଚଳିତହେଲା ।

ମରହଟ୍ଟମାନେ କେତେକାଳ ଓଡ଼ିଶା ଶାସନକରିଥିଲେ । କିନ୍ତୁ, ଆମଭାଷାରେ ମରାଠୀ ପ୍ରଭାବ ବିଶେଷ ପରିଲକ୍ଷିତ ହୁଏନାହିଁ । ଏହା ଆର୍ଯ୍ୟଭାଷା ହୋଇଥିବାରୁ ତାର ପ୍ରଭାବ ଲକ୍ଷ୍ୟକରି ପାଏନାହିଁ । ଏହି ସମୟରେ ପର୍ତ୍ତୁଗୀଜ, ଦିନେମାର, ଫରାସୀ, ଓଲନ୍ଦାଜ ଓ ଇଂରେଜ ପ୍ରଭୃତି ବହୁ ପାଶ୍ଚାତ୍ୟ ଭାଷାଭାଷି ଆସି ବାଣିଜ୍ୟ ବ୍ୟବସାୟକରି ବସତି ସ୍ଥାପନକଲେ । ଏମାନଙ୍କ ସଂସ୍ପର୍ଶରେ ଆସି ଆମ ଭାଷାରେ ଅନେକ ନୂତନ ଶବ୍ଦ ଓ ତାର ପ୍ରୟୋଗ ପ୍ରଚଳିତ ହେଲା । ୧୮୦୩ ଖ୍ରୀ:ଅରେ ଓଡ଼ିଶାରେ ଇଂରେଜ ଶାସନ ପ୍ରତିଷ୍ଠିତ ହେଲା । ଆମେ ତାଙ୍କଠାରୁ କେବଳ ଶବ୍ଦନୁହେଁ କି ପ୍ରତ୍ୟୟନୁହେଁ ଆହୁରି ଅନେକ କିଛି ଗ୍ରହଣ କରିଛୁ । ଇଂରେଜ ଭାଷାର ପଦଗଠନ ରୀତି, ବାକ୍ୟ ଗଠନରୀତି, ଅନୁକରଣରେ ଓଡ଼ିଆ ଭାଷାର ବ୍ୟାକରଣ ପରିବର୍ତ୍ତିତ ହୋଇଛି ।

ଆଧୁନିକ ଭାଷା (୧୮୫୦—)ଯଥାର୍ଥରେ ରାଧାନାଥ, ମଧୁସୂଦନଙ୍କ ପ୍ରବର୍ତ୍ତିତ ସାହିତ୍ୟଭାଷା । ଏ ଭାଷା ତଦ୍ଭବ ଶବ୍ଦ ବହୁଳ ଏବଂ ଏହାର ଗଠନ ରୀତିରେ ଏକ ସର୍ବମାନ୍ୟ Standard ରୀତି ଅନୁସୃତ ହୋଇଛି । ଏହା ପ୍ରତିବେଶୀଭାଷା ବଙ୍ଗଳା, ହିନ୍ଦି, ଉର୍ଦ୍ଦୁ ଓ ବିଦେଶୀ ଭାଷାମାନଙ୍କଠାରୁ ବହୁ ଉପାଦାନ ଗ୍ରହଣ କରିଅଛି । ତେଣୁ ପ୍ରତିଦିନ ଆମ ଭାଷା ନବନବ ଆହରଣ ଦ୍ୱାରା ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ଚାଲିଛି ।

———

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୬ | ସୃଙ୍ଖଳିତ | ଶୃଙ୍ଖଳିତ |
| ୨ | ୧୦ | Divin | Divine |
| ୩, ୬ | ୧୧, ୧୪ | ଭୌଗଳିକ ··· | ଭୌଗୋଳିକ |
| ୪ | ୧୫ | ଦୃତ | ଦ୍ରୁତ |
| ୪ | ୨୧ | ପରିପୃଷ୍ଟି | ପରିପୁଷ୍ଟି |
| ୭ | ୨୨ | ନତନ | ନୂତନ |
| ୧୧ | ୭, ୧୪, ୧୬ | ବର୍ହିମୁଖୀ | ବହିର୍ମୁଖୀ |
| ୧୧ | ୧୨ | Syntihetic ··· | Synthetic |
| ୧୨ | ୩ | ଅନ୍ତଗତ | ଅନ୍ତର୍ଗତ |
| ,, | ୪ | କାଫର | କାଫିର |
| ୧୫ | ୨ | ବ୍ୟାହ୍ବକ | ବାହ୍ୟକ |
| ,, | ୩ | ଭାଷାଭାଷି | ଭାଷାଭାଷୀ |
| ୧୬ | ୮ | ନକଟବର୍ତ୍ତୀତା ··· | ନକଟବର୍ତ୍ତିତା |
| ୧୬ | ୨୦ | (ଓଡ଼ିଆ) କପିଳକା | (ପାଲି) କପିଲକା |
| ୧୮ | ୧୧ | (ସଂସ୍କୃତ) ଆଲଜ ··· | (ସଂସ୍କୃତ) ଆଲବୁ |
| ୨୪ | ୩ | ସ୍ଥିରକୃତ | ସ୍ଥିରୀକୃତ |
| ୨୫ | ୧୮ | Colse Vowel ··· | Close Vowel |
| ,, | ୨୩ | Spread Vowel—ଅ, | Spread Vowel—ଆ |
| ୩୧ | ୫ | ଦ୍ୱୈଓଷ୍ଠ୍ୟବର୍ଣ୍ଣ ··· | ଦ୍ୱୈଓଷ୍ଠ୍ୟବର୍ଣ୍ଣ |
| ୬୩ | ୧୧ | ସ୍ୱରୁପା | ସ୍ୱରୂପା |
| ୬୪ | ୧୯ | ଚରମଁ | ଚରମ |
| ,, | ୨୧ | ସ୍ୱାତନ୍ତ୍ର | ସ୍ୱାତନ୍ତ୍ର୍ୟ |
| ୬୮ | ୧୬ | ଗଠନ ରୀତି | ଗଠନରୀତି |
| ୬୭ | ୨୨ | ସଂସ୍କତ | ସଂସ୍କୃତ |

ଏହି ପୁସ୍ତକ ପାଇବାର ଦୁଇଟି ନିର୍ଦ୍ଦିଷ୍ଟ ଠିକଣା—

କିତାବ ମହଲ,
କଲେଜ ଛକ, କଟକ-୩

ମହାପାତ୍ର ବ୍ରଦର୍ସ,
ବାଲୁବଜାର, କଟକ-୨